# ହଜିଥିଲେ ଖୋଜି ପାଇବି





ମହାପାତ୍ର ଶ୍ରୀ ନୀଳମଣି ସାହୁ

# ହଜିଥିଲେ ଖୋଜି ଆଣିବି

ଲେଖକ :
ମହାପାତ୍ର ନୀଳମଣି ସାହୁ



ଅଗ୍ରଦୂତ
କଟକ-୨

# ହଜିଥିଲେ ଖୋଜି ଆଣିବ

ଲେଖକ :
ମହାପାତ୍ର ନୀଳମଣି ସାହୁ

ପ୍ରକାଶକ :
ଅଗ୍ରଦୂତ
ବାଙ୍କାବଜାର କଟକ-୨

ପ୍ରଥମ ପ୍ରକାଶ :
ଡିସେମ୍ବର—୧୯୮୮

ପ୍ରଚ୍ଛଦପଟ୍ଟ :
ସୁଧାଂଶୁ ଶତପଥୀ

ମୁଦ୍ରଣ :
ସ୍ୱରାଜ ପ୍ରେସ,
ଝୋଲସାହି, କଟକ-୧

ମୂଲ୍ୟ :
ଛଅ ଟଙ୍କା ମାତ୍ର

HAJITHILE KHOJI ANIBI

by :

Mohapatra Nilamani Sahu

Publisher :
Agraduta
Bankabazar, Cuttack-2

Price : Rs. 6-00

# ସୂଚୀ


| ବିଷୟ | ପୃଷ୍ଠା |
|---|---|
| ୧ । ଗୃହବନ୍ଧୁଙ୍କ କଥା | ୧ |
| ୨ । ନିଜେ ବଞ୍ଚିବ ଅନ୍ୟକୁ ବି ବଞ୍ଚେଇବ | ୮ |
| ୩ । ହଜିଥିଲେ ଖୋଜି ଆଣିବ | ୧୩ |
| ୪ । କାଣୀ ବିରାଡ଼ି ଓ ଗ୍ଲେଠା କୁକୁର ଉପାଖ୍ୟାନ | ୨୧ |
| ୫ । ଓଧ ବଣଭୁଆ ସମ୍ବାଦ | ୨୯ |
| ୬ । ସତ କୁରାଡ଼ି ଓ ମିଛ କୁରାଡ଼ି | ୩୫ |
| ୭ । ଗଧଟା ସତରେ ଗଧ | ୪୦ |
| ୮ । ବୁଢ଼ାଟିଏ, ବୁଢ଼ୀଟିଏ | ୪୭ |




# ଚାରି ବନ୍ଧୁଙ୍କ କଥା

ଗୋଟିଏ ବଣରେ ଚାରୋଟି ଜନ୍ତୁ ଖୁବ୍ ସାଙ୍ଗ ହୋଇ ରହୁଥିଲେ —ସିଂହ, ବାଘ, ଭାଲୁ, ଆଉ ଗଧିଆ । ସେମାନେ ଏମିତି ସାଙ୍ଗ ଥିଲେ ଯେ କାହାକୁ ଦଣ୍ଡେ ବି ଛାଡୁନଥିଲେ । ଏକାଠି ବୁଲିବେ, ଏକାଠି ଖାଇବେ, ଏକାଠି ଶୋଇବେ, ଏକାଠି ବି ଖେଳିବେ । ଏକାଠି ମଧ



ଶୀକାର କରିବାକୁ ବାହାରିବେ । କୋଉଦିନ ଏକାଠି ମିଶି ହରିଣଟିଏ ମାରି ଆଣିବେ ତ କୋଉଦିନ ଏକାଠି ମିଶି ମଇଁଷିଟାଏ ମାରି ଆଣିବେ ।

କୋଉ କୋଉ ଦିନ ସାନ ଜନ୍ତୁଟାଏ ମିଳେ—କୁଣ୍ଟ୍ରା ବା ଠେକୁଆଟାଏ । କିନ୍ତୁ ବଡ଼ ଶୀକାର ମିଳୁ ବା ସାନ ଶୀକାର ମିଳୁ, ସମସ୍ତେ ଏକାଠି ମିଶି ଖାଇବେ । ଏମିତି ଭାବେ ସେ ଚାରିସାଙ୍ଗ ମହା ଆନନ୍ଦରେ ଜଙ୍ଗଲ ଭିତରେ ଥାନ୍ତି ।

ସେଇ ବଣରେ ଥିଲା ଗୋଟାଏ ଏକୁଟିଆ ବିଲୁଆ । ତାର କେହି ସାଙ୍ଗ ନ ଥାନ୍ତି । ସେ ଥିଲା ବଡ଼ ଏକଫିଙ୍ଗା ଆଉ ସ୍ୱାର୍ଥପର । ନିଜକଥା ଛଡ଼ା ସେ ଆଉ କାହା କଥା ଭାବେ ନାହିଁ । ସେଥିପାଇଁ ବଣର କୋଉ ଜନ୍ତୁ ତା' ସାଙ୍ଗେ ସାଙ୍ଗ ହୁଅନ୍ତି ନାହିଁ ।

ଥରେ ସେ ବିଲୁଆ ବୁଲି ବୁଲି ଯାଇ ସେଇ ସିଂହ, ବାଘ, ଭାଲୁ ଆଉ ଗଧିଆଙ୍କ ପାଖେ ପହଞ୍ଚିଗଲା । ସେତେବେଳକୁ ସେ ଚାରିସାଙ୍ଗ ଗୋଟାଏ ହରିଣକୁ ମାରି ମହା ଖୁସିରେ ତାକୁ ଖାଇ ଲାଗିଥାନ୍ତି । ମଝିରେ ମଝିରେ ସିଂହ ଗଧିଆ ପାଟିକି ଖଣ୍ଡିଏ ମାଉଁସଲାଗା ହାଡ଼ ବଢ଼ାଇ ଦେଉଥାଏ—କେତେବେଳେ ପୁଣି ବାଘ ଭାଲୁ ହାତକୁ ଖଣ୍ଡିଏ ହରିଣ କଲିଜା ବଢ଼ାଇ ଦେଉଥାଏ ।

ଏହା ଦେଖି ବିଲୁଆ ଭାବିଲା— କେମିତି ଯଦି ଏମାନଙ୍କ ସାଙ୍ଗରେ ସାଙ୍ଗ ହୁଅନ୍ତି—ତା'ହେଲେ ବିନା ପରିଶ୍ରମରେ ମତେ ସବୁଦିନେ ବଢ଼ିଆ ବଢ଼ିଆ ମାଉଁସ ଖାଇବାକୁ ମିଳିଯାଆନ୍ତା । ହେଲେ, ଏମାନେ ତ ସମସ୍ତେ ଭାରି ବଳପୂଆ ଜନ୍ତୁ । ମୁଁ ହେଲି ଛୋଟ ବିଲୁଆଟାଏ । ଏମାନେ କଣ ମତେ ପାଖରେ ପୂରାଇବେ ? ତଥାପି ଦେଖିବା । ଚେଷ୍ଟା କଲେ କ୍ଷତି କଣ ?

ଏପରି ଭାବି, ବିଲୁଆ ଖୁବ୍ ସାହସରେ ଯାଇ ସେମାନଙ୍କ ପାଖରେ ପହଞ୍ଚି ଖୁବ୍ ଗୋଟାଏ ଲମ୍ବା ନମସ୍କାର ପକାଇଲା—ନମସ୍କାର ! ହୁକେ ହୋ—ହୁକେ ହୋ ! ଆପଣମାନଙ୍କର ମଙ୍ଗଳ ହେଉ । ମୋର କେମନ୍ତ ଭାଗ୍ୟ ! ଆଜି ଏହି ଅପୂର୍ବ ଦୃଶ୍ୟ ଦେଖିଲି ! ଆହା ! ଆହା ! କି ସୁନ୍ଦର ସାଙ୍ଗ ହୋଇଛନ୍ତି ଆପଣମାନେ ! ଅଲକ୍ଷଣା ବଣରେ ସବୁ ଜନ୍ତୁ ଖାଲି ଆପଣା ଭିତରେ ମରାମରି ହେଉଛନ୍ତି । କେହି କାହା ସାଙ୍ଗରେ ସାଙ୍ଗ

ହୋଇ ଏମିତ ଆନନ୍ଦ ଖୁସି ହେଉନାହାନ୍ତି । କେବଳ ଆପଣମାନେ ମହାଭାଗ୍ୟବାନ । ଆଉ ମତେ ଧିକ୍ ଧିକ୍—ଶତ ଧିକ୍ ! ସାରାଜୀବନ ସାଙ୍ଗଟିଏ ଖୋଜିଲି । ମତେ ମିଳିଲା ନାହିଁ । ମୁଁ ଏଣିକି ଏକୁଟିଆ ମରିବି ।

ବିଲୁଆକୁ ଦେଖି ଓ ତା' କଥା ଶୁଣି ଚାରି ସାଙ୍ଗ ତା' ଆଡ଼କୁ ଚାହିଁଲେ । ସିଂହ କହିଲା—ହାଁ-ଇଁ-ଓ ! ଆରେ ବିଲୁଆ ! ସାଙ୍ଗ ହେବା ଏତେ ସହଜ ନୁହେଁ । ତେବେ ତୁ ଯଦି ଆମ ସହିତ ସାଙ୍ଗ ହେବାକୁ ଚାହୁଁ, ତେବେ ଆ ! ଆମ ସାଙ୍ଗେ ମିଶି ଏ ହରିଣ ମାଂସରୁ ଖଣ୍ଡେ ଖାଆ ! କିନ୍ତୁ ସାବଧାନ ! କୋଉଦିନ ଯଦି ନିଜ ସ୍ୱାର୍ଥ ପାଇଁ ଆମ ଭିତରୁ କାହାକୁ ଠକିବୁ, ସେଇଦିନ ମରିବୁ । ଗଧିଆ କହିଲା—ବିଲୁଆ ! ଶୁଣ୍ । ଆ— ଏଠିକି ଆ' । ନେ, ଏ ମାଉଁସଲଗା ହାଡ଼ରୁ ଖଣ୍ଡିଏ ଚୋବାଉ ଥା' । ଆଉ ଶୁଣ୍ ! ହେଇଟି, ତୁ ଆମ ସାଙ୍ଗରେ ସାଙ୍ଗ ହେବାକୁ ମନ କରୁଛୁ—ଭଲ କଥା—ସାଙ୍ଗ ହ । କିଛି ମନା ନାହିଁ । ଆମର ସାଙ୍ଗ ସଂଖ୍ୟା ଯେତିକି ବଢ଼ିବ, ସେତିକି ମଜା ହେବ । ତେବେ ଗୋଟିଏ କଥା । ମନେରଖ ବିଲୁଭାଇ ! ଆମ ସାଙ୍ଗମାନେ ଗୋଟିଏ ନିୟମ କରିଛୁ—ଯେ ଯୋଉଦିନ ଯାହା ଆହାର ପାଇବ, ତାକୁ ସମସ୍ତେ ମିଳିମିଶି ଖାଇବୁ । ତୁ ଯଦି କୋଉଦିନ ଏ ନିୟମ ଲଙ୍ଘିବୁ—ସେ'ଦିନ ତା' ପ୍ରାଭବ ପାଇବୁ ।

ଭାଲୁ କହିଲା—ଆରେ ବିଲୁ ! ତୋ' ଏକୁଟିଆପଣ ଦେଖି ଆଉ ତୋ ଦୁଃଖ ଶୁଣି ମତେ ବଡ଼ କଷ୍ଟ ଲାଗୁଛି । ସାଙ୍ଗ ମିଳିବା ଏତେ ସହଜ ନୁହେଁ—କି ସାଙ୍ଗ ହେବା ଏତେ ସହଜ ନୁହେଁ । ତେବେ ତୋତେ ଆମେ ଆଜିଠାରୁ ସାଙ୍ଗ କଲୁ । କିନ୍ତୁ ଗୋଟେ କଥା ମନେ ରଖିଥିବୁ—ବିପଦ-ବେଳେ ଯଦି ଆମ ଭିତରୁ କାହାକୁ ଛାଡ଼ି ଚାଲିଯିବୁ—ତେବେ ତା'ର ପ୍ରାଭବ ପାଇବୁ । ସବା ଶେଷରେ ବାଘ କହିଲା, ଆରେ ବିଲୁକୁନ୍ ! ଆ, ଆ, ଏଠିକି ଆ । ନେ. ଏ କଲିଜା ଖଣ୍ଡକ ପାଟିରେ ପକାଇ ଚାକୁଳୁ ଥା । ହରିଣ କଲିଜା ଭାରି ସୁଆଦ । ଶୁଣ୍ ବିଲୁ ! ତୋତେ ଆଜିଠାରୁ ଆମ ସାଙ୍ଗ କଲୁ । ନିଶ୍ଚିନ୍ତ ରହ । ହେଲେ ଗୋଟେ କଥା ମନେ ରଖିଥିବୁ । ଆମେ ଥିଲୁ ଚାରି ସଙ୍ଗାତ । ତୋତେ ମିଶାଇ ହେଲୁ ପାଞ୍ଚ ସଙ୍ଗାତ । କୋଉଦିନ ନିଜକୁ କାହାଠାରୁ କୋଉ ବିଷୟରେ ବଡ଼ ବୋଲି ଭାବି ଗର୍ବ କରିବୁ ନାହିଁ । ଯୋଉଦିନ ଗର୍ବ କରିବୁ—ସେଦିନ ଖର୍ବ ହେବୁ ।

ବିଲୁଆ ସବୁ ଶୁଣିସାରି ମନେ ମନେ ଖୁସି ଟିକିଏ ହେଲା । ହସି ହସି କହିଲା—ହୁଆ-ହୁଆ-ହୁଆ । ବନ୍ଧୁଗଣ ! ମତେ ଏସବୁ କଥା ଖୁବ୍ ଜଣାଅଛି । ଆପଣମାନେ ଦେଖନ୍ତୁ—ମୁଁ କେମିତି ଆପଣମାନଙ୍କ ସାଙ୍ଗରେ ସାଙ୍ଗ ହୋଇପାରେ । ମତେ ସାଙ୍ଗ କଲେ, ଆପଣମାନଙ୍କର ଖୁବ୍ ଉପକାର ହେବ ଜାଣିରଖନ୍ତୁ । କାରଣ ଆପଣମାନେ ସିନା ଦେହରେ ବଳୁଆ । ହେଲେ ଆପଣମାନଙ୍କର ବୁଦ୍ଧି କେତେ ? ଆପଣମାନଙ୍କ ଭିତରେ ମୋ'ଠାରୁ ବେଶୀ ଚତୁର ଆଉ ବୁଦ୍ଧିଆ ଭଲ କିଏ ଅଛି ? ବିଲୁଆ ବଡ଼ ଚତୁର—ପଇଡ଼ ବଡ଼ ମଧୁର ବୋଲି ମଣିଷମାନେ ସୁଦ୍ଧା ସାର୍ଟିଫିକେଟ୍ ଦେଇଛନ୍ତି ତ ?

ବାଘ କହିଲା—ଆରେ ହେ ବିଲୁଆ ! ତୁ ତ କଣ ମୂଳରୁ ଏମିତି ଗପ କଲୁଣି । ତୁ ଆଉ ଆମ ସାଙ୍ଗେ ସାଙ୍ଗ ହେବୁ କଣ ? ସିଂହ କହିଲା—ଛାଡ଼, ଛାଡ଼ । ତା'ର ଏଇ ଗୋଟିଏ ଦୋଷକୁ କ୍ଷମା କର । ସେ ଆମର ସାଙ୍ଗ ହେଉ । ଆ, ବିଲୁଆ ଆ' । ନେ ଏ ହରିଣ ମାଂସରୁ ଖଣ୍ଡିଏ ଖାଇଲୁ ଦେଖି । ତୋ' ଚେହେରାରୁ ଜଣାପଡ଼ୁଛି—ତୋ ପେଟରେ ସପ୍ତାହେ ହେଲା କିଛି ଖାଦ୍ୟ ପଡ଼ିନାହିଁ । ସିଂହ କଥା ମାନି ସମସ୍ତେ ବିଲୁଆକୁ ସାଙ୍ଗ କରିନେଲେ । ସେଦିନ ମଧ୍ୟ ବିଲୁଆ ହରିଣ ମାଂସରୁ ପେଟେ ଖାଇ ଆନନ୍ଦରେ ଶୋଇଲା । ଏମିତି ଏମିତି କିଛିଦିନ ସାଙ୍ଗସୁଙ୍ଗା ହୋଇ କଟିଗଲା । ସିଂହ, ବାଘ, ଭାଲୁ , ଗଧିଆ ଆଉ ବିଲୁଆ—ଏଇ ପାଞ୍ଚ ସଙ୍ଗାତ ମିଳିମିଶି କିଛିଦିନ ଖୁସିରେ କଟାଇଲେ । ଦିନେ କଣ ହୋଇଛି ନା—ପାଞ୍ଚ ସଙ୍ଗାତ ଏକାଠି ଗୋଟିଏ ପଡ଼ିଆରେ ବସି ଖିଆ ପିଆ କରୁଛନ୍ତି—ହଠାତ୍ କେତେଜଣ ଶିକାରୀ ବନ୍ଧୁକ ଧରି ସେମାନଙ୍କ ଆଡ଼କୁ ଆସୁଥିବାର ଦେଖାଗଲା । ସିଂହ ପ୍ରଥମେ ଶିକାରୀମାନଙ୍କୁ ଦେଖି କହିଲା—ଭାଇମାନେ ! ବିପଦ ପହଞ୍ଚିଗଲାଣି । ଆମ୍ଭେମାନେ ଆସ ଏକାଠି ମିଶି ହେଣ୍ଟାଳ ଛାଡ଼ି ସେମାନଙ୍କୁ ଆକ୍ରମଣ କରିବା । ଫଳରେ ସେମାନେ ଭୟରେ ଆମକୁ ଛାଡ଼ି ଚାଲିଯିବେ । ସମସ୍ତେ ସେଥିପାଇଁ ପ୍ରସ୍ତୁତ ହୋଇଗଲେ । ମାତ୍ର ବିପଦ କଥା ଶୁଣୁ ଶୁଣୁ ବିଲୁଆ ଭୟରେ ସମସ୍ତଙ୍କୁ ଛାଡ଼ିଦେଇ ପଛପଟକୁ ଦଉଡ଼ି ଯାଇ ଗୋଟିଏ ବୁଦାରେ ଲୁଚିଗଲା । ଶିକାରୀ ଦି'ଜଣ ମଧ୍ୟ ଏତେଗୁଡ଼ାଏ ହିଂସ୍ରଜନ୍ତୁଙ୍କୁ ଏକାଠି ହେଣ୍ଟାଳ

ଛୁଡ଼ିବାର ଦେଖି ଭୟରେ ପଳାଇ ଗଲେ । ସେମାନେ ପଳାଇ ଯିବା ପରେ—ବଲୁଆ ସେଇ ବୁଦାଭିତରୁ ବାହାରି ଆସି ସାଙ୍ଗମାନଙ୍କ ପାଖରେ ପହଞ୍ଚି କହିଲା—ହୁକେ-ହୁକେ ହୋ !! ସେ ମଣିଷ ଶିକାରୀଗୁଡ଼ାକ ଏତେ ଛେରୁଆ ! ମୁଁ ଯେମିତି ସେ ବୁଦାଭିତରୁ ହୁକେ ହୁକେ ହୋ ବୋଲି ହେଣ୍ଟାଳଟାଏ ମାରି ଦେଇଛି—ଶିକାରୀଗୁଡ଼ାକ ତ ଘୁନଆଁରେ ଛୁଡ଼ ! ହେ-ହେ-ହେ ! ହୁଆ ହୁଆ ହୁଆ ।

ବଲୁଆର ବାହାପିଆ କଥା ଶୁଣି ବାଘ ଖୁବ୍ ରାଗିଯାଇ ତା'କୁ ଗୋଟାଏ ଚଟକଣି ପକାଇ କହିଲା—ହାଁ-ମାଁ-ଗାଁ ନିମକହାରାମ କା ବଚ୍ଚା ! ତୁ ବିପଦବେଳେ ଆମ ଭଳି ସାଙ୍ଗଙ୍କୁ ଛାଡ଼ି ପଳେଇଥିଲୁ । ତୋ' ମୁହଁ ଆଉ ଆମେ ଚାହିଁବୁନି । ତୁ ଆମ ପାଖରୁ ପଳା । ବଲୁଆ ବାଘ କଥାରେ ଡରିଗଲା । ମାତ୍ର ସିଂହ ଥିଲା ଖୁବ୍ ସ୍ନେହୀ ଆଉ ଦୟାଳୁ । ସିଂହ କହିଲା—ହାଉଁ-ହାଉଁ ! ଛାଡ଼-ଛାଡ଼ ବନ୍ଧୁ । ବିଚରା ବଲୁଆଟିଏ ! କେତେ ତାର ବୁଦ୍ଧି । କେତେ ତା'ର ବଳ । ଏଥରକ ତାକୁ କ୍ଷମା କରି ସାଙ୍ଗରେ ରଖ ।

ଭାଲୁ ଆଉ ଗଧିଆ କହିଲେ—ହଉ ! ତୁମ କଥା ମାନି ଆମେ ତାକୁ ଏଥର ସାଙ୍ଗକଲୁ । ମାତ୍ର ସେ ଯଦି ଆଉ ଥରେ ଭୁଲ୍ କରେ—ତେବେ ତା'ର ପ୍ରାପ୍ୟ ସେ ପାଇବ ।

ଏମିତି ଏମିତି ଆଉ କିଛିଦିନ ଗଲା । ଥରେ ସେ ବଣରେ ଖରାଦିନେ ନିଆଁ ଲାଗିଗଲା । ସେଇ ନିଆଁରେ ବଣର ବହୁ ପଶୁପକ୍ଷୀ ପୋଡ଼ି ମରିଗଲେ । ହରିଣ, କୁଟ୍ରା, ବଣ କୁକୁର, ବଲୁଆ, ଠେକୁଆ ସବୁ ପ୍ରାଣୀ ପୋଡ଼ିଗଲେ । କିନ୍ତୁ ଆମର ଏ ପାଞ୍ଚସଙ୍ଗାତ ଗୋଟିଏ ପର୍ବତ ଗୁମ୍ଫାରେ ପଶି ରକ୍ଷା ପାଇଗଲେ । କିନ୍ତୁ ଜୀବନରେ ବଞ୍ଚିଗଲେ ସିନା—ଗୁମ୍ଫାରୁ ବାହାରି ଦେଖିଲେ ସେ ବଣରେ ଆଉ ପ୍ରାଣୀ ନାହାନ୍ତି । ଆଠ ଦଶଦିନ କାଳ ବଣଯାକ ଖୋଜି ଖୋଜି ସେମାନେ ଖାଇବା ପାଇଁ ଗୋଟାଏ ମୂଷାଛୁଆ ବି ପାଇଲେ ନାହିଁ । ସେଇଠୁ ଭୋକରେ ସବୁଯାକ ସାଙ୍ଗ ଆଉଟୁପାଉଟୁ ହେଲେ । ସେଇଠୁ ସିଂହ ଦିନେ କହିଲା—ଭାଇମାନେ ! ବର୍ତ୍ତମାନ ତୁମେମାନେ ଜଣ ଜଣ କରି ଏଇ ବଣର ଚତୁର୍ଦ୍ଦିଗକୁ ଯାଅ । ଜନ୍ତୁଜାନ୍ତୁ ଖୋଜିବୁଲ । ଯୋଉ ସାଙ୍ଗ ଯାହା ପାଇବ ଏଠିକି ନେଇ ଆସିବ ସମସ୍ତେ ମିଳିମିଶି ଖାଇବା ।

ସିଂହ କଥା ଶୁଣି ବାଘ, ଭାଲୁ, ଗଧିଆ ଓ ବିଲୁଆ ବଣର ଚାରିଦିଗକୁ ଶୀକାର ଖୋଜିବାକୁ ଗଲେ । ସିଂହ ନିଜେ ପାହାଡ଼ ଉପରେ ଚଢ଼ି ଶୀକାର ଖୋଜିଲା । ମାତ୍ର ସନ୍ଧ୍ୟା ହେଲା – ଗୋଟାଏ ସୁଦ୍ଧା ଜନ୍ତୁ କାହା ଆଗରେ ପଡ଼ିଲା ନାହିଁ । ସେଇ ପୋଡ଼ା ବଣରେ କଣ ଆଉ ଜନ୍ତୁଜନ୍ତା ଥିଲେ ଯେ ପାଇବେ ? ସକାଳ ହୋଇଆସିଲା । ସବୁ ସାଙ୍ଗଜାକ ନିରାଶ ହୋଇ ଗୁମ୍ଫା ପାଖକୁ ଫେରିଆସିଲେ । ମାତ୍ର ବିଲୁଆର ଦେଖାନାହିଁ । ସମସ୍ତେ ଏକ ସ୍ୱରରେ କହିଲେ—ବିଲୁଆ ଗଲା କୁଆଡ଼େ ? ଭାଲୁ କହିଲା—ବୋଧହୁଏ ଗୋଟାଏ ବଡ଼ ଜନ୍ତୁ ମାରି ତାକୁ ବହୁତ କଷ୍ଟରେ ବୋହି ବୋହି ଆଣୁଛି ଆମ ପାଇଁ । ତେଣୁ ଏତେ ଡେରି ହେଉଛି । ଗଧିଆକୁ ବିଲୁଆର ଗ୍ଲେଟକଲେଖା ଜଣା ! ସେ କହିଲା—ମୋର ସନ୍ଦେହ ହେଉଛି—ବିଲୁଆ ଗୋଟିଏ ଶ୍ରେଷ୍ଠ ଜନ୍ତୁ ଶିକାର କରି ଏକୁଟିଆ କୋଉଠି ଲୁଚି ରହି ଖାଇ ଲାଗିଛି । ଚାଲ ତାକୁ ଖୋଜିବାକୁ ଯିବା । ଗଧିଆ ପ୍ରସ୍ତାବରେ ସମସ୍ତେ ବିଲୁଆକୁ ଖୋଜିବାକୁ ବାହାରିଲେ । ଅଳ୍ପ ବାଟ ଯାଇଛନ୍ତି କି ନାହିଁ—ସେମାନେ ଗୋଟାଏ ଝରଣା କୂଳରେ ଏକ ଘଞ୍ଚ ବୁଦା ଦେଖିଲେ । ସେଇ ବୁଦାକୁ ଚାରିଆଡ଼ୁ ବେଢ଼ି ଦେଖିଲା ପରେ ହଠାତ୍ ତାଙ୍କ ଆଖିରେ ପଡ଼ିଲା ଯେ ବିଲୁଆ କଣ କରୁଛି ନା ଗୋଟାଏ ଠେକୁଆ କୋଉଠୁ ମାରି ନିଉଜକରେ ଖାଇ ଲାଗିଛି । ବାଘ ତ ଏ ଦୃଶ୍ୟ ଦେଖି ପାରିଗଲା । ଗୋଟାଏ କୁଦା ମାରି ସେ ବିଲୁଆ ପାଖରେ ପହଞ୍ଚିଗଲା । ତା'ପରେ ତା' ତଣ୍ଟିକୁ ଧରି କହିଲା—ହଇରେ ବଦମାସ୍ ଶିଆଳ ! ତୁ ଏଡ଼େ ସ୍ୱାର୍ଥପର ? ଠେକୁଆଟାଏ ଯୋଗାଡ଼ କରି ନିଜେ ଏଠି ଲୁଚି ବସି ଏକୁଟିଆ ଖାଉଛୁ ? ଆମେ ଚାରି ବନ୍ଧୁ ତେଣେ ଭୋକଉପାସରେ ତୋତେ ଚାହିଁ ବସିଛୁ ? ତୋ ତଣ୍ଟି କଣା କରି ଆଜି ରକ୍ତ ପିଇବି । ଗଧିଆ କହିଲା—ବାଘଭାଇ ! ଚଞ୍ଚଳ ସେ ପାଜିଟାକୁ ମାରିଦିଅ । ଆମେ ସମସ୍ତେ ମିଶି ତାକୁ ଏଇଠି ଜଳଖିଆ କରିଦେବା ।

ଏହିପରି କହି ସେମାନେ ବିଲୁଆକୁ ମାରିଦେବାକୁ ବସିଛନ୍ତି—ହଠାତ୍ ସିଂହ ଆସି ସେଠି ପହଞ୍ଚିଗଲା । ତାର ମନ ଖୁବ୍ ଉଦାର ଆଉ ଦୟାଳୁ ଥିଲା । ସେ ସମସ୍ତଙ୍କୁ ହାତ ଯୋଡ଼ି କହିଲା—ବନ୍ଧୁମାନେ ! ସେ ବିଲୁଆଟାକୁ ଛାଡ଼ିଦିଅ । ମାରନାହିଁ । ଯାହାକୁ ଥରେ ଆମେ ସାଙ୍ଗ ବୋଲି

ଘୋଷଣା କରିଥିଲେ – ଆଜି ତାଂକୁ ମାରିଦେବା ଆମ ପକ୍ଷରେ ହାନିକାରକ ହେବ । କିନ୍ତୁ ଦେଖ୍ ବିଲୁଆ ! ତୁ ଆଉ ଆମ ସହିତ ସାଙ୍ଗ ହୋଇପାରିବୁ ନାହିଁ । କାରଣ ଆମ୍ଭମାନଙ୍କର ବନ୍ଧୁ ହେବାର ଯୋଗ୍ୟତା ତୋର ଟିକିଏ ବି ନାହିଁ ।



ଏତିକି କହି ସିଂହ ତା'ର ବନ୍ଧୁମାନଙ୍କୁ ନେଇ ଚାଲିଗଲା । ଏବଂ ତା'ପରଠାରୁ ସେ ବିଲୁଆଟି ଲାଜ ଆଉ ଦୁଃଖରେ ଏକୁଟିଆ ବୁଲୁଛି । ଆଉ କେହି ତା' ସାଙ୍ଗେ ସାଙ୍ଗ ହେଉନାହାନ୍ତି ।



# ନିଜେ ବଞ୍ଚିବା ଅନ୍ୟକୁ ବି ବଞ୍ଚାଇବା

ଆମେ ମଣିଷମାନେ ଯେମିତି ଏ ପୃଥିବୀରେ ଅଛୁ, ସେମିତି ଅନ୍ୟ ଜୀବଜନ୍ତୁମାନେ ବି ଅଛନ୍ତି । ଭଗବାନ ଆମକୁ ସୃଷ୍ଟି କରିଛନ୍ତି—ସେମାନଙ୍କୁ ମଧ୍ୟ ସୃଷ୍ଟି କରିଛନ୍ତି । ସମସ୍ତେ ଏକାଠି ରହିବାରୁ ଏ ପୃଥିବୀ ସିନା ଏତେ ସୁନ୍ଦର ଦିଶୁଛି । ଖାଲି କଣ ଏକା ମଣିଷ ରହିଲେ ଏ ପୃଥିବୀ ସୁନ୍ଦର ହେବ ? ଆମେ ମଣିଷମାନେ ରହିବା—ଜଙ୍ଗଲରେ ବାଘ, ଭାଲୁ, ହରିଣ, ଠେକୁଆ, ଭାଲୁଆମାନେ ବି ରହିବେ—ଗଛବୃକ୍ଷରେ ବସାବାନ୍ଧି ସୁନ୍ଦର ସୁନ୍ଦର ଚଢ଼େଇମାନେ ରହିବେ—କୁଆ, କୋଇଲି, କଜଳପାତି, ଧଳାବଗ ଆଦି । ବାଡ଼ିବୁଦାରେ ରହିବେ ଗୋଧି, ନେଉଳ, ଶାଳଆପତମୀ—ଝୋଲ ଖାଲ ଖମା ପ୍ରଭୃତିରେ ରହିବେ ବେଙ୍ଗ, ଏଣ୍ଡୁଅ, ଚମ୍ପେଇ-ନେଉଳ—ଏମିତି ଏମିତି କେତେ ପ୍ରାଣୀ—ଛପନକୋଟି ଜୀବଜନ୍ତୁ ସାଙ୍ଗ-ସୁଖ ହୋଇ ରହିଲେ ଯାଇ ଏ ପୃଥିବୀ ଆମକୁ ଆଉରି ବେଶୀ ଲାଗିବ ।

କିନ୍ତୁ ଏଇ କଥାଟି ମୁଁ ଯେତେବେଳେ ସାନପିଲା ଥିଲି ବୁଝିପାରି ନଥିଲି । ତେଣୁ ପିଲାଦିନେ କିଛିଦିନ ପର୍ଯ୍ୟନ୍ତ ମୁଁ ପ୍ରାଣୀମାନଙ୍କ ପ୍ରତି ଟିକିଏ ନୃଶଂସ ବ୍ୟବହାର କରୁଥିଲି । କୁକୁରଟାଏ ଶୋଇଥିବ—ଢେଲା ପକେଇବି । ପ୍ରଜାପତି କି କଙ୍କିମାନେ ଫୁଲ ଉପରେ ଉଡ଼ୁଥିବେ—ସେମାନଙ୍କୁ ଧରିଆଣି ସେମାନଙ୍କ ଡେଣା ଛିଡ଼ାଇ ପକାଇବି । ବିଲେଇଟାକୁ ଧରିନେଇ ଉପରକୁ ଟେକି ତଳେ କଚାଡ଼ି ଦେବି । ବେଙ୍ଗମାନଙ୍କୁ ଧରିଆଣି ତାଙ୍କ ପେଟକୁ ବେତକଣ୍ଟାରେ ଫୋଡ଼ି ପକେଇବି । ମତେ ଏସବୁ ଭାରି ମଜା ଲାଗୁଥିଲା । ସେଇ ସେଇ ପ୍ରାଣୀମାନଙ୍କୁ କଷ୍ଟ ଦେଇ ମୁଁ ଭାରି ଖୁସି ହେଉଥିଲି । ମୋର ଥିଲା ଏଇଟା ଗୋଟେ ମଜା ଖେଳ ।

କିନ୍ତୁ ଦିନେ ଗୋଟିଏ ଘଟଣା ଘଟିଲା । ସେଥିରେ ମୋ ମନ ବଦଳି ଗଲା । ଭାରି କଷ୍ଟକର କଥା । ମୁଁ ସେତେବେଳେ ତୁମମାନଙ୍କ ଭଳି ସାନପିଲା ହୋଇଥାଏ । ପ୍ରାଥମିକ ସ୍କୁଲରେ ପଢୁଥାଏ । ବର୍ଷାଦିନେ ଆମ ଗାଁ ପାଖରେ ଯେତେ ଖାଲ ଜାଗା ଆଉ ଗାଡ଼ିଆ ପୋଖରୀ ଅଛି— ସବୁ ପାଣିରେ ପୂରିଯାଏ ଆଉ ସେଥିରେ ଅସଂଖ୍ୟ ବେଙ୍ଗ ଥାନ୍ତି । ସନ୍ଧ୍ୟା ପରେ କିମ୍ବା ମେଘୁଆ ଦିନରେ ସେମାନେ ପାଣିରୁ ବାହାରି ଆସି ଉଞ୍ଚା କୁଦ ଦେଖି ମେଳି ହୋଇ ବସି ରଡ଼ି ଛାଡ଼ନ୍ତି । ଭାରି ଭଲ ଲାଗେ ଅବଶ୍ୟ । ରାତିଯାକ କେଁ କଟର ଶବ୍ଦରେ ଗାଁ ଫାଟି ପଡୁଥାଏ । ବେଙ୍ଗମାନେ ବଡ଼ ନିରୀହ ପ୍ରାଣୀ । କାହାର କିଛି କ୍ଷତି କରନ୍ତି ନାହିଁ । ପୋକଜୋକ ଧରି ଖାନ୍ତି । ବହୁ ପ୍ରକାରେ ବେଙ୍ଗ ଅଛନ୍ତି । ସବୁଠାରୁ ବଡ଼ ଆଉ ସୁନ୍ଦର ହେଲେ ବ୍ରାହ୍ମଣୀଆ ବେଙ୍ଗ । ଦିନେ ମୁଁ କେତେକ ସାଙ୍ଗ ସହ ଆମ ବାଡ଼ି ପୋଖରୀ ପାଖ ତାଳଗଛ ମୂଳେ ଗୋଟେ ବଡ଼ ବ୍ରାହ୍ମଣୀଆ ବେଙ୍ଗକୁ ଦେଖିଲି । ଚାରିଆଡ଼ୁ ଜଗି ଗୋଟେ ଲୁଗା ପକାଇ ଆମେ ସେ ବେଙ୍ଗଟିକୁ ଧରି ପକାଇଲୁ । ସେଇଠୁ ମୋ ମନରେ ଗୋଟେ ଦୁଷ୍ଟବୁଦ୍ଧି ଖେଳିଲା— ମୁଁ ତାର ଗୋଡ଼ରେ ଗୋଟେ ଦଉଡ଼ି ବାନ୍ଧି ଆମ ଗୁହାଳ ଘର ଭିତରକୁ ଆଣିଲି ଏବଂ ଗୋଟେ ଖୁଣ୍ଟ ପୋତି ବାନ୍ଧି ପକାଇଲି । ମୋର ଧାରଣା ଥିଲା ଯେ—ଏ ବ୍ରାହ୍ମଣୀଆ ବେଙ୍ଗଟି ଏଠି ଆମ ଗୁହାଳେ ରାତିସାରା ବୋବେଇବ ଓ ମୁଁ ଆମ ଘରେ ରାତିରେ ବିଛଣାରେ ଶୋଇ ତା' ରଡ଼ି ଶୁଣିବି । ଭାରି ମଜା ଲାଗିବ । ବେଙ୍ଗଟିକୁ ଗୁହାଳେ ବାନ୍ଧିଦେଇ ଆମେ ଯେଝା ଘରକୁ ଚାଲିଗଲୁ । ସନ୍ଧ୍ୟା ହେଲା । ରାତି ଆସିଲା । ସେଦିନ ରାତିରେ ବିଜୁଳି ଘଡ଼ଘଡ଼ି ସହ ଖୁବ୍ ବର୍ଷା ମଧ୍ଯ ହେଲା । ମୁଁ ବିଛଣାରେ ଶୋଇ କାନ ପାରିଥାଏ —କେତେବେଳେ ଆମ ଗୁହାଳରୁ ବନ୍ଧା ହୋଇଥିବା ବ୍ରାହ୍ମଣୀଆ ବେଙ୍ଗ ରଡ଼ି ଛାଡ଼ିବ —ମୁଁ ଶୁଣିବି । ମାତ୍ର ରାତି ପ୍ରହରକ ଯାଏ କିଛି ଘୋର ଶବ୍ଦ ଶୁଭାଗଲା ନାହିଁ । ମୁଁ ଲଣ୍ଠନ ନେଇ ଗୁହାଳକୁ ଯାଇ ଦେଖିଲି । ସେ ବେଙ୍ଗ ସେମିତି ବନ୍ଧା ହୋଇ ପଡ଼ିଛି । ଘୋର ଶବ୍ଦ ନାହିଁ । ମୁଁ ଘରକୁ ଫେରି ଆସି ବିଛଣାରେ ଶୋଇଗଲି । ହଠାତ୍ ରାତି ଅଧରେ ମୋ ନିଦ ଭାଙ୍ଗିଗଲା । ଗୋଟାଏ ଭୀଷଣ ରଡ଼ି ଆମ ଗୁହାଳରୁ ଭାସି ଆସୁଥାଏ । ସତେକି କିଏ ଗୋଟାଏ ମଣିଷ ବାଘ କି ଭାଲୁ ହାବୁଡ଼େ

ଫଡ଼ ଝଙ୍କଳରେ ରଡ଼ ଛୁଡ଼ୁଛି । ମତେ ଖୁବ ଡର ମାଡ଼ିଲା । ମୁଁ ବୋଉକୁ ଉଠାଇଲି । ପଚାରିଲି—ବୋଉ ! ଶୁଣିଲୁ ! ଏମିତି ଭୟଙ୍କର ରଡ଼ି ଚିତ୍କାର କୋଉଠୁ ଆସୁଛି ? ବୋଉ କହିଲା—ତୁ ଶୋଇପଡ଼ ପୁଅ !



କୋଉଠି ଗୋଟାଏ ବେଙ୍ଗକୁ ସାପ ଧରିଛି ବୋଧେ । ସେ ବେଙ୍ଗଟା ଏମିତି ମରଣ ରଡ଼ି ଛାଡ଼ୁଛି ! ଏ କଥା ଶୁଣି ମୋ ମନରେ ଭୟ ସାଙ୍ଗରେ ଭାରି ଦୁଃଖ ମଧ୍ୟ ହେଲା । ମାତ୍ର ମୁଁ ଗୁହାଳେ ବେଙ୍ଗଟିଏ ବାନ୍ଧିଛି ବୋଲି କାହାକୁ କହିନଥାଏ—ବୋଉ ମଧ୍ୟ ଜାଣିନଥାଏ । ମୋର ସନ୍ଦେହ ହେଉଥାଏ – ମୋର ବନ୍ଧା ବେଙ୍ଗଟିକୁ କ'ଣ ଆଉ ସାପ ଆସି ଧରିଛି କି ? କିନ୍ତୁ ଭୟ ଆଉ ଦୁଃଖରେ ମୁଁ କାଲୁଆ ହୋଇ ଯାଉଥାଏ । ମୋର ଆଉ କିଛି ଉପାୟ ନଥାଏ । ରାତିଯାକ ମୋତେ ଆଉ ନିଦ ହେଲା ନାହିଁ । ସେ ବ୍ରାହ୍ମଣୀ ବେଙ୍ଗ ସେମିତି ଖିଷଣ କଷ୍ଟରେ ରଡ଼ି କରୁଥାଏ । କ୍ରମେ ତା'ର ରଡ଼ି ମଧ୍ୟ କମି ଆସିଲା । ଏଥର ଖାଲି କୁନ୍ଥାଇଲା ଭଳି ଶବ୍ଦ ଶୁଭୁଥାଏ । ସକାଳ ହୋଇଆସିଲା । ସମସ୍ତେ ଉଠିଲେ । ମୁଁ ଆଉ ଆମର ଗୋପାଳ ମଧ୍ୟ ଗୁହାଳକୁ ଯାଇ ଦେଖୁ ଯେ ଗୋଟେ ବଡ଼ଟ

ତମଣା ସାପ ସେ ବନ୍ଧାଥିବା ବେଙ୍ଗଟିକୁ ପ୍ରାୟ ଗିଳି ସାରିଲାଣି । ଖାଲି ଅଳ୍ପ କିଛି ସେ ବେଙ୍ଗଟିର ଦେଖାଯାଉଛି । ଗୋଟେ ଗୋଡ଼ ଯାପୁଲିଟି ! କିନ୍ତୁ ବେଙ୍ଗଟି ବନ୍ଧାଥିବାରୁ ସାପ ଆଉ କୁଆଡ଼େ ଯାଇପାରୁ ନାହିଁ । ଏହା ଦେଖିବା ମାତ୍ରେ ମୋ ଗ୍ଣତ ଫାଟିଗଲା ଭଳି ଲାଗିଲା । ମୁଁ ଭେଁ ଭେଁ ହୋଇ କାନ୍ଦିଉଠିଲି । ଓଃ ! ମୁଁ କି ଖରାପ କାମ କରିଛି । ବେଙ୍ଗଟିକୁ ଯଦି



ସେମିତି ବାନ୍ଧି ନଥାନ୍ତି—ତେବେ ସେ ନିଶ୍ଚେ ସାପ ମୁହଁରୁ ପଳାଇ ଯାଇ ଜୀବନ ବଞ୍ଚାଇଥାନ୍ତା । ଓଃ ! ମୁଁ କି ନିଷ୍ଠୁର ! ନିଜକୁ ବହୁ ଧିକ୍କାର କଲି । ବିନଯାକ କାନ୍ଦିଲି । ଅନ୍ୟମାନେ ଠେଙ୍ଗାବାଡ଼ି ଧରି ଆସି ସାପଟାକୁ ବାଡ଼େଇ ମାରିଦେଲେ । କିନ୍ତୁ ମତେ ଗୋଟେ ଶିକ୍ଷା ମଧ୍ୟ

ମିଳିଗଲା । ମୋର ଦୋଷରୁ ନିରୀହ ବେଙ୍ଗ ଆଉ ସାପ ଦୁଇଟି ପ୍ରାଣୀଙ୍କ ଜୀବନ ଗଲା ସିନା ! ସେଇଦିନୁଁ ଆଜଯାଏ—ମୁଁ ଆଉ କୌଣସି ପ୍ରାଣୀଙ୍କୁ କଷ୍ଟ ଦେଇ ନାହିଁ । ଆଜି ବୁଝିଛି—ଏ ପୃଥିବୀରେ ସବୁପ୍ରାଣୀ ମିଳିମିଶି ରହିଲେ ଯାଇ ଏ ପୃଥିବୀ ସୁନ୍ଦର ହେବ । ମଣିଷ ସବୁ ପ୍ରାଣୀଙ୍କଠୁଁ ବଡ଼ । କାରଣ ସେ ନିଜେ ବଞ୍ଚେ ଓ ଅନ୍ୟ ପ୍ରାଣୀମାନଙ୍କୁ ମଧ୍ୟ ବଞ୍ଚାଏ ।



# ହଜିଥିଲେ ଖୋଜି ଆଣିବ

ସେଦିନ ଇସ୍କୁଲ ଛୁଟି ହୋଇଗଲା ସବୁଦିନ ପରି ଠିକ୍ ଏଗାରଟା ବେଳକୁ । ଘଣ୍ଟା ବାଜିବାମାତ୍ରେ ସମସ୍ତେ ତତ୍ପର ହୋଇ ବହିବସ୍ତାନି, ବ୍ୟାଗ୍ ବାନ୍ଧି ଶ୍ରେଣୀ ଭିତରୁ ପଦାକୁ ବାହାରି ଆସିଲେ । ସମସ୍ତଙ୍କୁ ଭୋକ ହେଲାଣି । ଆଜି ପୁଣି ମର୍ଗୁଶିର ମାସ ଶେଷପାଳି ଗୁରୁବାର । ଘରେ ଲକ୍ଷ୍ମୀପୂଜା ଲାଗି କେତେ କ'ଣ ପିଠାପଣା କରିଛନ୍ତି ମାଆମାନେ, ଖେଚୁଡ଼ି, କ୍ଷୀରି, କାକରା, ବରପିଠା । ପୂଜା ସରିବଣି ।

ଇସ୍କୁଲରୁ ଫେରି ହୁ'କନା ଗାଧୋଇଦେଇ ଥାଳି ପାଖରେ ବସି ମନଖୁସିରେ ଖାଇବା କଥା । ସେଇଥିପାଇଁ ସବୁ ପିଲାଯାକ ଯେ ଯାହାର ସାଙ୍ଗକୁ ଧରି, କେହି କେହି ବା ଦଳବଳ ହୋଇ ଘରମୁହାଁ ଛୁଟିଲେ । ସମସ୍ତେ ଖୁସି ଆନନ୍ଦରେ ଚାଲୁଥାନ୍ତି—ପାଟି କରୁ କରୁ କେହି କେହି ଦଉଡ଼ୁଥାନ୍ତି ।

ସମସ୍ତଙ୍କ ଭିତରେ କାନ୍ତ ମଧ୍ୟ ଶ୍ରେଣୀଘରୁ ପଦାକୁ ବାହାରି ଆସିଲା । ତା ମନ ବି ଛନଛନ ହେଲାଣି—ଚଞ୍ଚଳ ହେଲାଣି ଘରକୁ ଯିବାକୁ । ତା'ର ସବୁଠାରୁ ବଡ଼ ସାଙ୍ଗ ମାଇନୁ ଆଜି ଇସ୍କୁଲକୁ ଆସିନାହିଁ । ଆଉ ଗୋଟିଏ ସାଙ୍ଗ ହେଲା ମିତୁନ୍ । ମିତୁନ୍ ଆଜି ତାକୁ ଛାଡ଼ି ଆଉଜଣେ ସାଙ୍ଗକୁ ଧରି ଗଲା । ତାକୁ ଡାକିଲେ ବି ପଛକୁ ଚାହିଁଲା ନାହିଁ ।

କାନ୍ତର ମୁହଁ ଶୁଖିଗଲା । ତାକୁ ଆଜି ଏକୁଟିଆ ଘରକୁ ଯିବାକୁ ପଡ଼ିବ । ବାଟ ତ ବେଶୀ ନୁହେଁ । ମଝିରେ ଗ୍ରେଟିଆ ଆମ୍ବତୋଟାଟିଏ ।

ତା' ଆରପଟକୁ ଜାଡ଼ୁଆଣୀ ଠାକୁରାଣୀଙ୍କ ଦେଉଳ । ସେଇଠୁ ଚଢ଼େଇ ତାଙ୍କ ସାଇ ।

କାନ୍ତକୁ ମଧ୍ୟ ଭାରି ଶୋକ କରୁଥିଲା । ଏଣେ ଘରେ ବୋଉର ଗୁରୁବାର କ୍ଷୀରଖେଚେଡ଼ି ପିଠା କଥା ମନେପଡ଼ି ତାକୁ ଆଉରି ବେଶୀ ଶୋକ କଲା । ସେ ତା' ବ୍ୟାଗ୍‌ଟାକୁ କାନ୍ଧରେ ଝୁଲାଇ ଦେଇ ତରବର ହୋଇ ଘରକୁ ଛୁଟିଲା । କଣ୍ଟୁବାଟ ଯାଇଛି କି ନାହିଁ—ତା' ଆଖିରେ ପଡ଼ିଲା ପଧାନ ଘରର ଶଙ୍ଖୀ ପୁଷି ବିଲେଇଟା 'ସାପ୍ତା' ଉପରେ ବସି ସମସ୍ତଙ୍କ ଆଡ଼କୁ ଚାହିଁ ମିଆଁଉ ମିଆଁଉ ହୋଇ କାନ୍ଦୁଛି । ଏଡ଼େ ବିକଳ ହୋଇ ସେ କାନ୍ଦୁଥାଏ ଯେ ତା କାନ୍ଦ ଶୁଣି ଆଉ ଜଣକୁ ନିଶ୍ଚେ କାନ୍ଦ ମାଡ଼ିବ ।



ପଧାନ ଘରର ଏଇ ଶଙ୍ଖୀ ବିଲେଇକୁ କାନ୍ତ ଭଲକରି ଜାଣେ । ଦିନେ ଦିନେ ସେ କାନ୍ତ ଘରକୁ ମଧ୍ୟ ବୁଲିଆସେ । କାନ୍ତ ତାକୁ ଭାରି

ଭଲପାଏ । ସେ ବି ଆଗ ଆସି କାନ୍ତ ପାଖରେ ଟିକିଏ ଗେଲ ହେଲେ ଯାଇ ଯୁଆଡ଼େ ଯିବ, ଯାହା କରିବ । କାନ୍ତ ତାକୁ ପିଠା ଟିକିଏ କି ବିସ୍କୁଟ ଖଣ୍ଡିଏ କି ଉଖୁଡ଼ା ଗଣ୍ଡିଏ ଦିଏ । ସେ ଖୁବ୍ ଖୁସିରେ ଖାଇଦିଏ । କାନ୍ତ ଦେହରେ ଘସି ହୋଇ ମିଆଁଉ ମିଆଁଉ ହୁଏ । ତା'ପରେ ତାଙ୍କ ଘରୁ ବାହାରିଯାଏ । କାନ୍ତର ଇଚ୍ଛା ସେ ତାଙ୍କ ଘରେ ସବୁଦିନେ ଥାଆନ୍ତା । ସେ ତା' ସାଙ୍ଗେ ଖେଳୁଥାଆନ୍ତା । ମାତ୍ର ଶଙ୍ଖୀ ପୁଷି ପଧାନ ଘର ଛଡ଼ା ଆଉ କୋଉଠି ରହିବ ନାହିଁ । କାନ୍ତ ଜାଣିଥିଲା ଯେ, ମାସେ ହେଲାଣି ଶଙ୍ଖୀର ଦୁଇଟି ଛୁଆ ହୋଇଛନ୍ତି । ଘିଅ କଉଡ଼ିଆ ଛୁଆ । ଦୁଇଟାଯାକ ଧଳା ରୁମାଲିଆ । ଜଣକ ମୁଣ୍ଡରେ ପୁଣି କଳାଛିଟ ଅଛି । ଆଉ ଜଣକ ଅଣ୍ଟାରେ ସେମିତି କଳାଛିଟ ରହିଛି ।

କାନ୍ତ ଦିନେ ଶଙ୍ଖୀକି ଗେଲ କରି ପଚାରିଥିଲା—ଆଲୋ ଶଙ୍ଖୀ ! ତୋ' ଛୁଆରୁ ମତେ ଗୋଟେ ଦେବୁ ?

ଶଙ୍ଖୀ କହିଲା—'ମିଆଁଉ-ମିଆଁଉ । ଦେବି ଦେବି । ତରବର ହୁଅନା । ଛୁଆ ଦି'ଟା ଚାଲି ଶିଖି ନାହାନ୍ତି, ଖାଇ ଶିଖି ନାହାନ୍ତି. ଟିକିଏ ବଡ଼ ହୋଇ ଯାଆନ୍ତୁ—ତୁମକୁ ଦେବି ।' କାନ୍ତ ଅପେକ୍ଷା କରିଥିଲା କୋଉଦିନ ତା'ଛୁଆ ବଡ଼ ହେବେ, ଚାଲି ଶିଖିବେ, ଖାଇ ଶିଖିବେ—ସେ ଯାଇ ଗୋଟିଏ ନେଇଆସିବ ।

ଆଜି ଏ ଅବେଳରେ ସେହି ଶଙ୍ଖୀ ପୁଷି ପୁଣି ଏଠି ଏ ସ୍କୁଲ ପାଖେ ରାସ୍ତାକଡ଼ରେ ବସି ଏମିତି କାନ୍ଦୁଛି କାହିଁକି ? କ'ଣ ହୋଇଛି ତା'ର ? କିଏ ତାକୁ ବାଡ଼େଇଛି ନା କ'ଣ ? କାନ୍ତକୁ ଭାରି ଖରାପ ଲାଗିଲା, ସେ ଶଙ୍ଖୀ ପାଖକୁ ଯାଇ ପଚାରିଲା—କ'ଣ ହେଲା କଲେ ତୋ'ର ଶଙ୍ଖୀ ? ଏତେବାଟ ଏଠିକି ଆସି ଏମିତି ନିର୍ମାଖୀ ଭଳି କାନ୍ଦୁଛୁ କାହିଁକି ?

ଶଙ୍ଖୀ କହିଲା କାନ୍ଦି କାନ୍ଦି—ମିଆଁଉ-ମିଆଁଉ ମିଆଁଉ-ମିଆଁଉ । କ'ଣ କହିବି ମୋ ଦୁଃଖ ଲୋ ତୋତେ କାନ୍ତ ! ମୋ ଛୁଆ ଦିଓଟି ଆଉ ନାହାନ୍ତି ଲୋ ! ତାଙ୍କୁ କିଏ ଚୋରେଇ ନେଇଯାଇଛି ଲୋ ! ତାଙ୍କୁ ଛାଡ଼ି ମୁଁ କେମିତି ବଞ୍ଚିବି ଲୋ ! ଏ ଗାଁରେ ଦୁଷ୍ଟ ପିଲାମାନେ ଭାରି

ଉପୁଡ଼ା ହେଲେଣି ଲୋ । ମିଆଁଉ ମିଆଁଉ । ମୋ ଛୁଆ ଦ'ଟା ଏଇନେ କୋଉଠି ଥିବେ ଲୋ ? କ'ଣ ଖାଉଥିବେ ଲୋ ? ତାଙ୍କୁ କଏ ମାରଧର କରୁଥିବେ ଲୋ ! ମୋ ଗୁଣ୍ଡ ଫାଟିଯାଉଛି ଲୋ କାନ୍ତ ! ମୁଁ ମୋ ଛୁଆଙ୍କୁ ନ ପାଇଲେ କୂଅକୁ ଡେଇଁପଡ଼ି ମରିବି ଲୋ କାନ୍ତ ! ମିଆଁଉ ମିଆଁଉ ।

ଶଙ୍ଖୀର ଦୁଃଖ କଥା ଶୁଣି କାନ୍ତର ଆଖିରୁ ଲୁହ ବହିପଡ଼ିଲା । ସେ ଶଙ୍ଖୀକି କୋଳକୁ ଟେକିଆଣି ଆଉଁସି ଦେଲା । କହିଲା—ମୋ ସୁନା ଶଙ୍ଖୀଟା ପରା, କାନ୍ଦନା । ତୋ କାନ୍ଦ ଦେଖି ମୋତେ କାନ୍ଦ ମାଡ଼ୁଛି । କିନ୍ତୁ ଖାଲି କାନ୍ଦିଲେ କ'ଣ ହେବ ? ଚାଲି ମୋ ସାଙ୍ଗରେ । ତୋ' ଛୁଆଙ୍କୁ ଖୋଜିବା । ଖୋଜି ଖୋଜି ନିଶ୍ଚେ ବାହାର କରିବା । ତୁ ମୋ ପଛେ ପଛେ ଆ । ମୁଁ ଆଜି ସାହିଯାକ ଘର ଘର ବୁଲି ତୋ ଛୁଆଙ୍କୁ ଖୋଜିବି । ମୁଁ ଜାଣିଛି ସେଇ ଛତରା ପଦନା ତୋ' ଛୁଆଙ୍କୁ ନେଇଥିବ । ତା'ର ଘରି ଝିଟିପ ଗୁଣ ଅଛି । ସେ ବଣବୁଦା ସବୁଆଡ଼େ ବୁଲି ଚଢ଼େଇ ବସାରୁ ଚଢ଼େଇ ଛୁଆମାନଙ୍କୁ ଚୋରିକରି ନେଇଆସେ । ଚଢ଼େଇଙ୍କ ମା'ବାପ ଦିନରାତି କାନ୍ଦୁଥାନ୍ତି । ସେ କିନ୍ତୁ କାହାକୁ ଡୋଷିପାରେ ନାହିଁ । ସମସ୍ତଙ୍କୁ ମାରେ । ଚାଲ୍ ଦେଖିବା ।

କାନ୍ତି, ଶଙ୍ଖୀ ବୁହେିଯାକ ଘରକୁ ଫେରିଲେ ।

ଘରକୁ ଆସି କାନ୍ତ କହିଲା—ଶଙ୍ଖୀ ଲୋ ! ଆ' ତୁ ଆଉ ମୁଁ ଆଗ ଗଣ୍ଡେ ଖାଇଦେବା । ତା'ପରେ ତୋ ଛୁଆଙ୍କୁ ଖୋଜିବାକୁ ଯିବା । ପୁଷି କହିଲା— ମିଆଁଉ ମିଆଁଉ ନାଇଁଲୋ କାନ୍ତ । ମୋ ଛୁଆକୁ ନ ପାଇଲା ଯାଏ ମୋ ପେଟକୁ ଭାତ ଯିବନି । କାନ୍ତ ତାକୁ ବୁଝେଇ ବୁଝେଇ ଟିକିଏ କ୍ଷୀର ଖୁଆଇଲା । ନିଜେ ପେଟଭରି ଖେଚୁଡ଼ି, କ୍ଷୀର, ପିଠା ଖାଇଲା । ତା'ପରେ ଶଙ୍ଖୀକି ଧରି ଗାଁ ଭିତରକୁ ଗଲା ବିଲେଇ ଛୁଆଙ୍କୁ ଖୋଜିବା ପାଇଁ ।

ସେ ଗାଁରେ ସବୁମୋଟ ଏଗାରଟି ଘର । କାନ୍ତ କହିଲା - ଶଙ୍ଖୀ ! ତୁ ଦାଣ୍ଡଦୁଆରେ ବସିଥା । ମୁଁ ଆଗ ନାହାକ ଘର ଭିତରେ ଖୋଜିଆସେ ।

ଶଙ୍ଖୀ କହିଲା—ହଉ ଯାଅ । ମିଆଁଉ । କାନ୍ତ ନାହାକ ଘରେ ପଶି ସବୁଆଡ଼ ଖୋଜିଲା । କେଉଁଠି ବିଲେଇ ଛୁଆ ଦ'ଟାଙ୍କୁ ପାଇଲା

ନାହିଁ । ସେଠୁ ସେ ଗଲା ସାହୁଙ୍କ ଘରକୁ । ତା' ଭିତରେ ବି ପାଇଲା ନାହିଁ । ଏମିତି ଏମିତି କାନ୍ତ ସବୁରି ଘର ଖୋଜିଲା । କିନ୍ତୁ ବଲେଇ-ଛୁଆଙ୍କୁ ପାଇଲା ନାହିଁ ।

ସେଇଠୁ କାନ୍ତ ଗଲା କାଣ୍ଡି ଘରକୁ । କାଣ୍ଡିଘରେ ପଶି କାନ୍ତ ଚାରିଆଡ଼େ ଖୋଜିଲା । ହାଣ୍ଡିଶାଳଠୁ ଢେଙ୍କିଶାଳ ଯାଏ । ତା'ପରେ ବାରିପଟକୁ ଗଲା । ସେଠି ଗୋଟାଏ ଗୋବର ଗଦା ଦେଖିଲା । କାଣ୍ଡିଘରେ ଏବେ ଗୋଟାଏ ଗୋବରଗ୍ୟାସ୍ ପ୍ଲାଣ୍ଟ ବସିଛି । କାନ୍ତ ଚାରିଆଡ଼କୁ ଚାହିଁ ଦେଖିଲା । ସେଇ ପାଖରେ ଥିଲା ଗୋଟେ ଚାଳଘର । ସେଠି କାନ୍ତ ଯାଇ ଉଣ୍ଡି ଦେଖିଲା – କୋଳଥବୋଡି ଗଦା ପାଖରେ ଗୋଟାଏ କାଳିଆ ଭୂଆ ବିରାଡ଼ି ଶୋଇଛି ।

ସେ କାନ୍ତକୁ ଦେଖି ଉଡ଼ମଡ଼ କରି ଅନାଇଲା । ତା'ପରେ ବାଘଭଳି ହେଣ୍ଟାଳିଲା—ମ୍ୟାଉଁ । ତୁ କିଏ ରେ ? ମୁଁ ଏଠି ଟିକିଏ ଶାନ୍ତିରେ ଶୋଇଛି । କାନ୍ତ ପଚାରିଲା—ଆରେ କାଳିଆଭୂଆ ! ତୁ ମୋ ଉପରେ ରାଗ୍‌ନା । ମୁଁ ତୋ'ର କିଛି କ୍ଷତି କରିବିନି । ପଧାନ ଘର ଶଙ୍ଖୀ ବଲେଇକି ତୁ ତ ଜାଣିଥିବୁ । ତା'ର ମାସକର ଦୁଇଟା ଛୁଆଙ୍କୁ କିଏ ଚୋରିକରି ନେଇଛି । ଶଙ୍ଖୀ ଘରେ କାନ୍ଦୁଛି । ତୁ ଦେଖିଛୁ କି ସେ ଛୁଆ ଦି'ଟା କେଉଁଠି ଅଛନ୍ତି ? କିଏ ନେଇଛି ? ମୁଁ ତ ସାଇସାରା ବୁଲି ଆସିଲିଣି କେଉଁଠି ପାଉନି !

କାଳିଆଭୂଆ ସେମିତି ଶୋଇରହି ତା' ଲାଞ୍ଜ ହଲାଇଲା । ତା'ପରେ ଅଳସଭଙ୍ଗି କହିଲା—ମ୍ୟାଉଁ ! ମ୍ୟାଉଁ । ଜାଣେରେ ଜାଣେ । କିନ୍ତୁ ଯଦି ମତେ ତୁମ ଘରୁ ଖଣ୍ଡିଏ ଶୁଖୁଆ ଆଣି ଦବୁ ତେବେ ମୁଁ କହିଦେବି । ମୋର ଆଜି ଚାମ୍ପଡ଼ା ଶୁଖୁଆ ଟିକିଏ ଖାଇବାକୁ ଭାରି ମନ ହଉଛି । ଯା ଆଣିବୁ ଯା' । କାନ୍ତ ଆଉ କ'ଣ କରିବ ! ସାଙ୍ଗେ ସାଙ୍ଗେ ଘରକୁ ଯାଇ ଚାମ୍ପଡ଼ା ଶୁଖୁଆଟିଏ ଆଣି କାଳିଆଭୂଆକୁ ଦେଲା । କାଳିଆଭୂଆ ତାକୁ ପାଇ ଭାରି ଖୁସି ହୋଇ ଉଠିପଡ଼ିଲା । ଶୁଖୁଆଟିକୁ ଟିକିଏ ଚାଟିଦେଇ ଓଠରେ ଜିଭ ବୁଲାଇ କହିଲା—ବାଃ, ବଢ଼ିଆ ଶୁଖୁଆ ।

ମ୍ୟାଉଁ ମ୍ୟାଉଁ । ଏ ବେଳେ ଜାଡ଼ ପଡ଼ୁଛି—ଶୁଖୁଆ ଟିକିଏ ନ ଖାଇଲେ ମୋର ଦେହ ଆଉ ଚଳୁନ । ସ୍ୱର ଥଣ୍ଡା ହୋଇଛି ଲୋ କାନ୍ତ ! ହଉ ଶୁଣ୍ । ଦେଲା ଛତରକୁ ଜାଣୁ ତ ? ଏତେ ଦୁଷ୍ଟ ଟୋକା ସେ ! ବଡ଼ଲଇ କୁକୁର ଦେଖିଲେ ଗାଳି ଢେଲା ପକେଇବ । ଦେଖୁନୁ, ଢେଲା ଫକେଇ କେମିତି ମୋ ଗୋଡ଼ ଖୋଟାକରି ଦେଇଥିଲା । ତାକୁ ମୁଁ ଦିନେ ନିଶ୍ଚେ କାମୁଡ଼ିବି । ସେଇ ଟୋକା ଶଙ୍ଖୀର ଛୁଆ ଦି'ଟାକୁ ଆଣି ତାଙ୍କ ଢେଙ୍କିଶାଳରେ ଦଉଡ଼ିରେ ବାନ୍ଧି ରଖିଛି । ଯା ଦେଖି ଆସିବୁ ।



କାନ୍ତ ସଙ୍ଗେ ସଙ୍ଗେ ପଦନା ଘରକୁ ଗଲା । ଶଙ୍ଖୀ ମଧ୍ୟ ଗଲା ତା' ସାଙ୍ଗରେ । ଶଙ୍ଖୀ ଆଉ ସେ ଦୁହେଁଯାକ ପଦନା ଘରେ ପଶି ଦେଖିଲେ,

ପଦନା ଗୋଟାଏ କନ୍ଥା ଘୋଟହୋଇ ଶୋଇଛି । ତା ମା' ବି ଶୋଇଛି । ଘଡକୁ ଘଡ ତାଙ୍କ ଢେଙ୍କିଶାଳରେ ଶଙ୍ଖୀର ଛୁଆ ଦି'ଟା ବନ୍ଧା ହୋଇ ମାଉଁ ମାଉଁ ହୋଇ କାନ୍ଦୁଛନ୍ତି । ସେମାନେ ଯେମିତି ଶଙ୍ଖୀ ଆଉ କାନ୍ତୁକୁ ଦେଖିଲେ ଖୁବ୍ ଜୋର୍‌ରେ କାନ୍ଦିଉଠିଲେ ।

କାନ୍ତୁ ସେମାନଙ୍କୁ ଆଉଁସି ଦେଇ ଧୀରେ ଧୀରେ କହିଲା—ଆରେ ଛୁଆମାନେ, ଚୁପ୍ ହୋଇଯାଅ, କାନ୍ଦ ନାହିଁ । ବେଶୀ ପାଟିକରି କାନ୍ଦିଲେ ପଦନା ଉଠିପଡ଼ିବ । ମୁଁ ତୁମର ଦଉଡ଼ି ଫାଶ ଫିଟାଇ ଦେଉଛି । ଏହା କହି କାନ୍ତୁ ଛୁଆ ଦି'ଟାକୁ ଦଉଡ଼ିରୁ ଫିଟାଇ କୋଳରେ କାକଧରିଲା ଓ ଶଙ୍ଖୀ ସହିତ ଖୁବ୍ ଧୀରେ ଧୀରେ ସେ ଘରୁ ବାହାରି ଯାଇ ଦାଣ୍ଡରେ ଆସି ପହଞ୍ଚିଲା ।

ଦାଣ୍ଡକୁ ଆସି ଶଙ୍ଖୀ କହିଲା—କାନ୍ତୁ ! ମୋ ଛୁଆଙ୍କୁ ଛାଡ଼ । ଭୋକରେ ତାଙ୍କ ପେଟ ପଶିଗଲାଣି । ସେ ଟିକିଏ ମୋ'ଠାରୁ ଦୁଧ ଖାଇ ନିଅନ୍ତୁ । କାନ୍ତୁ ଛୁଆଙ୍କୁ ଯେମିତି ଛାଡ଼ି ଦେଇଛି—ସେମାନେ ମହା-ଆନନ୍ଦରେ ମା' ପାଖକୁ ଲାଗିଗଲେ । ଶଙ୍ଖୀ ସେମାନଙ୍କୁ ନେଇ ବାଡ଼-କଡ଼କୁ ଚାଲିଗଲା । ପାଉଁଶଗଦା ପାଖରେ ଶୋଇପଡ଼ି ଛୁଆଙ୍କୁ ଦୁଧ ଖୋଇଲା ।

କାନ୍ତୁ କହିଲା—ଶଙ୍ଖୀ ! ଏଥର ମୁଁ ଯାଉଛି । ତୁ ତ ତୋ'ର ଛୁଆଙ୍କୁ ପାଇଲୁ । ଏବେ ମତେ ଗୋଟେ ଛୁଆ ଦବୁ ତ ? ସେଇ ଛୁଆଟା ମୁଁ ନେବି—ଯାହାର ମୁଣ୍ଡ ପାଖରେ କଳାଛିଟ ଅଛି ।

ଶଙ୍ଖୀ ଏଥର ଟିକିଏ ହସିଲା । କହିଲା—ମ୍ୟାଉଁ ମ୍ୟାଉଁ ! ଦେବିଲେ ଦେବି । ତୁ ଏଡ଼େ ସୁନାଝିଅ, ତୋ'ର ଯୋଗୁଁ ଜାଣ ଆଜି ମୁଁ ମୋର ଛୁଆ ଦି'ଟାକୁ ଫେରି ପାଇଲି । ପଦନା ଛତରା ନିଶ୍ଚେ ମୋ ଛୁଆଙ୍କୁ ମାରି ଦେଇଥାନ୍ତା । ମୁଁ ତତେ ନିଶ୍ଚେ ଏଇ ଛୁଆଟିକି ଦେବି । ଆଉ ମାସେ ଯାଉ । ସେ ଟିକିଏ ଆଉ ବଡ଼ ହୋଇଯାଉ ।

କାନ୍ତୁ କହିଲା—ହଉଲେ ଶଙ୍ଖୀ ହଉ । ମତେ ଭାରି ଖୁସି ଲାଗୁଛି । ତୁ ତୋର ଛୁଆଙ୍କୁ ଫେରି ପାଇଲୁ । ତୋ ଛୁଆ ମଧ୍ୟ ତୋତେ ଫେରି

ପାଇଲେ । କେଡ଼େ ଖୁସିରେ ସେମାନେ ତୋ'ଠାରୁ ବଦ ଖାଉଛନ୍ତି ।
ମତେ ଭାରି ଖୁସି ଲାଗୁଛି ଦେଖିକରି ।

ଶଙ୍ଖୀ କହିଲା—ମିଆଁଉ ! ଆଲୋ କାନ୍ତ ! ଏ ଗାଁର ସବୁ ଝିଅ ତୋରି ଭଳିଆ ହୁଅନ୍ତୁ । ଯାହାର ଯାହା ହଜିବ, ସେମାନେ ସେସବୁ ଖୋଜି ଆଣନ୍ତୁ । ତା' ହେଲେ ଆଉ କାହାର ଦୁଃଖ ରହିବ ନାହିଁ ।



# କାଣୀ ବିରାଡ଼ି ଓ ଛୋଟା କୁକୁର ଉପାଖ୍ୟାନ

ପଧାନ ଘର କାଣୀବିରାଡ଼ି ଆଉ ମାହାନ୍ତି ଘର ଙ୍ଗୁଠା କୁକୁର ଦୁହେଁଯାକ ଘରି ସାଙ୍ଗ । ଦହିଁଙ୍କ ପ୍ରକୃତି ଏକା, କାମ ମଧ୍ୟ ଏକା । ଦହେଁ-ଯାକ ଖାଇପିଇ ସବୁବେଳେ ଶୋଇଥାନ୍ତି—ନହେଲେ ଦହିଁଙ୍କ ପାଖରେ ଦହେଁ ନିଜ ସମ୍ବନ୍ଧେ ବାହାପିଆ ମିଛକଥା ଗପୁଥାନ୍ତି ।' ପଧାନ ଘର ଖଳାବାଡ଼ିରେ ଯୋଉ ଗୃହଠା ନଡ଼ାଗଦା ଅଛି—ଆଉ ତା' ପାଖେ ପାଖେ ଯୋଉଠି ଦୁଇଠା ସଜନା ଗଛ ଅଛି—ତାରି ମୂଳେ ପାଉଁଶ ଗଦା ହୋଇଥାଏ । ପ୍ରତିଦିନ ଦି'ପ୍ରହରଆଡ଼କୁ କାଣୀ ବିରାଡ଼ି ପଧାନ ଘରୁ ଦୁଧ ମାଛ ଘିଅ ଖାଇଦେଇ ସେଠିକି ଚାଲିଆସେ । ଙ୍ଗୁଠା କୁକୁର ବି ସେତିକିବେଳକୁ ମାହାନ୍ତି ଘରୁ ଖାଇପିଇ ସେଠିକି ଆସିଥାଏ । ଦି'ସାଙ୍ଗ ନିଜ ଭିତରେ ନିଜର ମିଛ ବାହାଦୁରୀ ବଖାଣୁଥାନ୍ତି । କାଣୀ ବିରାଡ଼ି କହେ —ବୁଝିଲୁ ସାଙ୍ଗ ! କାଲି ରାତିରେ ପଧାନ ଘର କୋଠିଘରୁ ଛଅଠା ହାଏଁ ହାଏଁ ମୂଷାଙ୍କୁ ଶିକାର କଲି । ସେଇଠୁ ଓଳିଆ ଆଉ ବସ୍ତା ସନ୍ଧିରୁ ଦଶଗୁଠା ଚୂଟିଆ ମୂଷାଙ୍କୁ ବି ମାରି ସାବାଡ଼ କଲି । ସେ ମୂଷା ସବୁ ବୁଝିଲୁ ? ତୋରି ଉଣ୍ଟା ହେବେ । ଓଃ ! ଘରି ହାଲିଆ ଲାଗୁଛି ସାଙ୍ଗ ।

ଙ୍ଗୁଠା କୁକୁର ନିଜର ବାହାଦୁରୀ ବଖାଣେ—ଆରେ ସାଙ୍ଗ ! କାଲି ରାତିରେ ମାହାନ୍ତି ଘରେ ଗୃହଠା ଚୋର ଛଅଠା ଡକାଏତ ପଶିଲେ । ସମସ୍ତଙ୍କ ହାତରେ ଦୁଇଠା ଲେଖାଁ ବନ୍ଧୁକ—ଛଅଠା ଲେଖାଁ ଛୁରୀ—ଆଠୁଠାଲେଖାଁ ବୋମା । ମୁଁ ଯେମିତି ଦେଖିଛି—ବୁଝିଲୁ ହୋ ହୋ ହୋଇ ଖେପିଗଲି ସେମାନଙ୍କ ଉପରକୁ । ଗୋଟେ ଡକାଏତ ଠୋ' କିନା ବନ୍ଧୁକ

ଘୁଟେଇ ଦେଲ୍—ସେ ଗୁଳାଟା ମୋ ଉପରେ ବାଜିବା ପୂର୍ବରୁ ମୁଁ ସେ ଗୁଳିକ ଡେଇଁପଡ଼ି ଯାଇ ଘାଡ ଉପରେ ପଡ଼ିଲି । ସେଠୁ ପୁଣି କୁଦାମାରି ତଳକୁ ଆସି ଗୋଟାଏ ଡକାଏତର ଗୋଡ଼କୁ ଏମିତି କାମୁଡ଼ିଦେଲି ଯେ, ତା' ଗୋଡ଼ଟା ଛିଡ଼ିଗଲା । ତା'ପରେ ତ ଯେ ଯୁଆଡ଼େ ପ୍ରାଣ ଧରିକରେ ପାଳେଗ ଡେଇଁ ପ୍ରାଣଧରି ଛୁ — । ଓଃ ! ସେଇ ପରିଶ୍ରମରେ ଆଜି ଯାଏ ଦେହଟା ଦରଜ ଝିମ୍ ଝିମ୍ ଲାଗୁଛି ।

କିନ୍ତୁ ଅସଲ କଥା ହେଲା—ଦୁହେଁଯାକ ଘୋର ନିକମା ଅଳସୁଆ । କେବଳ ଖାଇପିଇ ଶୋଇବା—ନହେଲେ ନିଜ ବଡ଼ପଣରେ ମିଛ ବାହାଦୁରୀ ଗପିବା ହେଲା କାମ । ପଧାନ ଘରେ ଏତେ ଗୃଦୁଆମୂଷା, ଗାତୁଆମୂଷା ଆଉ ଚୁଟିଆମୂଷା ହେଲେଣି ଯେ, ସମସ୍ତେ ଅସ୍ତବ୍ୟସ୍ତ ହୋଇ ପଡ଼ିଲେଣି । ଗାତୁଆମୂଷାମାନେ କାନ୍ଥଯାକ ଗାତ କରିଦେଲେଣି । ଗୃଦୁଆମୂଷାମାନେ ଗୃଳ କାଟି କାଟି ଛପର ଉଡ଼ାଇ ଦେଲେଣି । ଚୁଟିଆମୂଷାମାନେ ଘରେ ଯେତେ ଜାମା ଲୁଗା ବହିପତ୍ର ଥିଲା ସବୁ କାଟିକୁଟି ସଫା କରି ସାରି— ଏବେ ପଧାନ ବୁଢ଼ା ଶୋଇଥିବାବେଳେ ତା ଚୁଟି କାଟିବାରେ ଲାଗିଛନ୍ତି । ଧାନକୋଠିଯାକ ଗାତ—ଓଳିଆଯାକ କଣା—ବସ୍ତାଯାକ କଣା । ଘରେ ବାହାରେ ଗୃହଆଡ଼େ ବିରି, କୋଳଥ, ଧାନ ପଡ଼ିଛି । କିନ୍ତୁ ପଧାନଘରର ଏଇ ପୋଷା ବିରାଡ଼ିଟିର କିଛି ଚିନ୍ତା ନାହିଁ । ସେ ଦୁଧଭାତ ମାଛଭାତ ଖାଇ ଚୁଲିମୂଳେ ଉଷୁମ ଠାଣି ଶୋଇଥାଏ । ଦିନେ ପଧାନ ବୁଢ଼ାର ପିଲାମାନେ ପୁଷିକି ଡାକି କହିଲେ—ଆରେ ପୁଷି ! ତୁ ତ ହେଲୁ ବିରାଡ଼ି ଜାତି । ମୂଷା ମାରି ଖାଇବା ତୁମ କାମ । ଦେଖୁଚୁ ତ ଏ ମୂଷା-ମାନେ ଆମକୁ କେମିତି ନଷ୍ଟଭ୍ରଷ୍ଟ କଲେଣି । ତୁ ଖାଲି ଦୁଧଘିଅ, ମାଛ-ଭାତ ଖାଇ ଆରାମରେ ଶୋଉଛୁ—ଗୋଟେ ଦି'ଟା ହେଲେ ମୂଷା ମାରି ଆମକୁ ଦେଖା !

ପୁଷି ବଳେଇ ଏ କଥାକୁ ଏ କାନରେ ପୂରେଇ ସେ କାନରେ ବାହାର କରିଦେଲା । କହିଲା—ମିଆଉଁ ! ଯାଉନୁ ! ଦୁଧ-ମାଛ ଭାତ ଖାଇ ମୁଁ ଦିନେ ଆରାମରେ ଶୋଇବି, ନା ମୂଷାଙ୍କ ପଛରେ ଗୋଡ଼େଇଥିବି ? କାହିଁ, ' ଷାଙ୍କ ପାଇଁ ଯନ୍ତା ବସଉନ ! ଭାତ ଆଉ ଶୁଖୁଆରେ ବିଷ ଦେଇ

ମାରୁନ ! ନ ହେଲେ ତମେ ସବୁ କଣ କରୁଛ କି ? ଠେଙ୍ଗାବାଡ଼ ଧରି ସେଗୁଡ଼ାଙ୍କୁ ଗୋଡ଼େଇ ମାରୁନ । ମୋର ଗରଜ ପଡ଼ିଛି ମୂଷାଙ୍କ ପଛରେ ଗୋଡ଼େଇ ମାରିବାକୁ ! ଛି-ଛି-ଛି—ଆଉ ମତେ ପ୍ରାଣୀ ହତ୍ୟା ପାପରେ ପକାଅନା ବାବୁ ! ମିଆଁଉ-ମିଆଁଉ-ମିଆଁଉ, ହରେକୃଷ୍ଣ, ହରେକୃଷ୍ଣ, ହରେକୃଷ୍ଣ !



ପଧାନଘର ପିଲମାନେ ଆଉ କଣ କହିବେ ? କଣ କରିବେ ? କିଛିଦିନ ଗଲା । ପଧାନ ବୁଢ଼ାର ସାନପୁଅ ଗୋଟିଏ ଚମତ୍କାର ନେଉଳ କିଣିଆଣି ଘରେ ପାଳିଲା । ନେଉଳ ଭଲ ଜନ୍ତୁ । ଘରେ ସାପ ଜନ୍ତୁଜନ୍ତା ପୂରେଇ ଦେବ ନାହିଁ । ମୂଷାମାନଙ୍କୁ ବି ଡରେଇବ । ନେଉଳଟିକୁ ଦେଖି ମଧ ସମସ୍ତେ ସୁଖ ପାଇଲେ । ତାଙ୍କୁ ବି ଦୁଧ, ଘିଅ, ମାଛ, ଭାତ

ଖାଇବାକୁ ଦିଆଗଲା । ସେ ସମସ୍ତଙ୍କର ଭାରି ଗେହ୍ଲା ହେଲା । ମାସେ ଦି'ମାସ ଭିତରେ ନେଉଳ ଗୋଟେ ବୋଡ଼ାସାପକୁ ମାରି ଖଣ୍ଡ ଖଣ୍ଡ କରିଦେଲା । ତନି ଚାରିଟା ମୂଷାଙ୍କୁ ମଧ୍ୟ ମାରି ଦେଲା । ସମସ୍ତେ ନେଉଳର ଭାରି ପ୍ରଶଂସା କଲେ ।

କିନ୍ତୁ ପୁଷି ଜମା ଏ ନେଉଳକୁ ସହି ପାରିଲା ନାହିଁ । ତାର ନେଉଳ ପ୍ରତି ଭାରି ହିଂସା ହେଲା । ସବୁବେଳେ ଭାବିଲା—କେମିତି ସେ ଏ ନେଉଳକୁ ମାରିବ । କିନ୍ତୁ ନେଉଳକୁ ମାରିବା ତା' ପକ୍ଷରେ ସହଜ ନୁହେଁ । ତେଣୁ ନେଉଳ ଉପରେ ସବୁବେଳେ ଗରଗର ହେଉଥାଏ ।

ଦିନେ କଣ ହୋଇଛି ନା—ଖରାବେଳେ ନେଉଳ ଓଳିଆ ଭିଡ଼ ସନ୍ଧିରେ ଶୋଇ ଗୋଟେ ମୂଷାକୁ ଛକିଛି—ପୁଷି ସେଣୁ ଆସିଲା । ନେଉଳକୁ କହିଲା—ମ୍ୟାଉଁ ! ହେ ନେଉଳ ଟୋକା ! ସେଠୁ ଉଠିଯା । ନେଉଳ କହିଲା କାହିଁକି ଉଠିବି ? ପୁଷି କହିଲା—ମୁଁ ଶୋଇବି । ନେଉଳ କହିଲା—ତୁ ଯାଉନୁ ଚୂଲିମୁଣ୍ଡରେ ଶୋଇବୁ । ନହେଲେ କୋଠି ତଳେ ଶୋଇବୁ । ପୁଷି ରାଗି କରି କହିଲା—ମେୟୁଁ ଉଁ-ଉଁ-ଓଁ ! ତୁ ତ ଭାରି ବଡ଼ ବଡ଼ କଥା କହୁଛୁରେ ନେଉଳିଆ ଟୋକା ! ମୁଁ ଏ ଘରେ ଆଗ ନା ତୁ ଆଗରେ ? ମୋର ଯୋଉଠି ଇଚ୍ଛା ହେବ ମୁଁ ସେଠି ଶୋଇବି । ଉଠ୍ ସେଠୁ । ନେଉଳ କହିଲା—ନା, ମୁଁ ଉଠିବିନି । କଣ କରୁଚୁ କର । ପୁଷି ରାଗିଯାଇ ନେଉଳ ପିଠିକି ଗରଗର କରି ଆମ୍ପୁଡ଼ି ଦେଲା । ନେଉଳ ଛାଡ଼ିବା ଜନ୍ତୁ ? ସେ ସାପପରି ଜନ୍ତୁକୁ ସାଧି କଲାବାଲା ! ସେ କୁଲପଡ଼ ପୁଷିର ଗୋଟେ ଆଖିକି ଆମ୍ପୁଡ଼ି କଣା କରି ଦେଲା । ପୁଷି ବିକଳରେ କାନ୍ଦି କାନ୍ଦି ସେଠୁ ପଳେଇଲା । ଆଖିରୁ ଧାରଧାର ରକ୍ତ ବହିଯାଉଥାଏ । ଭାବିଲା—ସେ ନିଶ୍ଚେ ଏହାର ପ୍ରତିଶୋଧ ନେବ ।

ପୁଷି ଚାଲିଲା ତା' ସାଙ୍ଗ ମାହାନ୍ତିଘରର ପୋଷା କୁକୁର ପାଖକୁ । ମାହାନ୍ତିଘର କୁକୁର ବି ସେମିତି ପୁଷି ଭଳିଆ ନିକମା, ଅଳସୁଆ । ସବୁବେଳେ ଖାଇପିଇ ଆରାମରେ ଢିକିଶାଳ ପାଖେ ନହେଲେ ଚୁହାଳେ ପାଉଁଶଗଦା ପାଖେ ଶୋଇଥିବ । ମାହାନ୍ତିଘର ବାଡ଼ିରେ ଗୋରୁ ପଶି

ନଦଳକାନ୍ଦ କାଟିଲେ କେତେ ? —କ ବାଡ଼ ଭାଙ୍ଗି ଗୋରୁ ପଶି ଶାଗ କିଆରି ଖାଇଲେ କେତେ ? —କ ବାଡ଼ରେ ମାଙ୍କଡ଼ ପଶି ଲାଉ କଖାରୁ କଷି ଛିଣ୍ଡାଇ ଖାଇଲେ କେତେ ? ସେ ନକମା ଅଳସୁଆ କୁକୁରର ସେ ଆଡ଼କୁ ନଜର ନଥା ନାହିଁ । ମାହାନ୍ତଘର ସମସ୍ତେ ତା' ଉପରେ ବିରକ୍ତ । କିନ୍ତୁ କଣ ଆଉ କରିବେ ? ପୋଷିଛନ୍ତି ତ ପିଲାଦିନୁଁ—କ'ଣ ବାହାର କରିଦେବେ ।

ପୁଷି ଯାଇ ଯେମିତି ସେ କୁକୁର ପାଖେ ପହୁଞ୍ଚିଛି—ତାକୁ ଦେଖି କୁକୁର କହିଲା – ଭେ ଭେ ଭେ ! କରେ ସାଙ୍ଗ ! ତୋ' ଆଖି କେମିତି ଏପରି କଣା ହେଲା ? କହ ତୋ ଆଖି କିଏ ଏମିତି କଣା କରିଛି ? ମୁଁ ନିଶ୍ଚେ ଆଜ ତାକୁ କାମୁଡ଼ି ଖଣ୍ଡଖଣ୍ଡ କରିବି ।

ପୁଷି କାନ୍ଦ କାନ୍ଦ କହିଲା – ବୁଝିଲୁ ସାଙ୍ଗ ! ସେଇ ବଦମାସ୍ ନେଉଳ, ତାର ଇଚ୍ଛା— ମୁଁ କେମିତି ସେ ଘରୁ ଯାଏଁ । ଆଉ ସେ ସବୁଦିନ ଦୁଧ ଘିଅ ମାଛ ଭାତ ଖାଇ ଆରାମରେ ରହୁ । ଶୁଣ୍ ସାଙ୍ଗ ! ମୁଁ କାଲି ରାତିସାରା ଚାରିଟା ଚିକୁଆମୂଷା—ଆଠଟା ଗାଢୁଆମୂଷା ଆଉ ପନ୍ଦରଟା ଚୁଟିଆମୂଷାଙ୍କୁ ମାରି ହାଲିଆ ହୋଇ ଟିକେ ଚୁଲାମୁଣ୍ଡରେ ଶୋଇ ଉଷୁମ ଟାଣୁଛି – ମୋ ଆଖି ଟିକେ ବୁଜି ହୋଇ ଆସିଥାଏ—ସଇତାନ ନେଉଳ କେତେବେଳେ ଆସି ହିଂସାରେ ମୋ ଆଖିକି ଆମ୍ପୁଡ଼ି ଏମିତି କଣା କରି ଦେଇଛି ଦେଖ୍ । ଈଃ କେତେ ରକ୍ତ ବହିଲାଣି ! ମିଆଁଉ ଉଁ ! ଓହୋ, କି କଷ୍ଟ ! ତୁ ସାଙ୍ଗ କେମିତି ହେଲେ ଆଜ ତାକୁ ମାରି ଖତମ କର ।

କୁକୁର କହିଲା—କଣ ହେଲା ? ସେ ଛାର ନେଉଳ ଟୋକାର ଏଡ଼େ ସାହସ ! ମୋ ସାଙ୍ଗ ଆଖିକି କଣା କଲା ? ଆଜ କଣ କରିବି ସାଙ୍ଗ ! କାଲି ରାତିରେ ଚାରିଟା ଚୋର, ଆଠଟା ଡକାଏତ, ଏ ଘରେ ପଶିଥିଲେ, ସାଙ୍ଗରେ ବୋମା ବନ୍ଧୁକ ଛୁରୀ—ହେଲେ ମୁଁ କଣ ସେମାନଙ୍କୁ ଘରେ ପୂରାଇ ଦେଲି ? ଏମିତି ଭୁକିଲି ଯେ ଗାଁଟାଯାକ ଲୋକ ଉଠିଗଲେ । ମୁଁ ବି ଦୁଇଟା ଚୋର ଆଉ ତିନିଟା ଡକାଏତଙ୍କୁ ଗୋଡ଼େଇ ତାଙ୍କ ଗୋଡ଼କୁ କାମୁଡ଼ି ଛିଣ୍ଡେଇ ଦେଇଛି । ଆଉ ସେମାନେ ଚାଲି ନପାରନ୍ତି । ସେଥିପାଇଁ ମତେ ଟିକେ ହାଲିଆ ଲାଗୁଛି । ହଉ ହଉ ଚାଲ । ଆମେ ସେ ପାଜି ନେଉଳକୁ ଦିହେଁଯାକ ମିଶି ଖତମ କରିଦେବା । ଚାଲ !

ପୁଷି ଆଉ କୁକୁର ଦୁହେଁଯାକ ପ୍ରଧାନ ଘର ବାରପଟ ଦେଇ ନେଉଳ ଯୋଉଠି ଶୋଇଥିଲା ସେଠି ଆସି ପହଞ୍ଚିଗଲେ । ପ୍ରଥମେ ଯେମିତି ପୁଷି ନେଉଳକୁ ଆକ୍ରମଣ କରିବାକୁ ତା ଆଡ଼କୁ କୁଦି ପଡ଼ିଲା— ନେଉଳ ବି ସେଠି ଝପଟି ପଡ଼ି ଦଉଡ଼ି ବାରଣ୍ଡାକୁ ପଳାଇଲା । ସେଇଠୁ କୁକୁର ଡହଁକ ଯାଇ ଉଠିଲା ବାରଣ୍ଡାକୁ । ସେଇଠୁ ନେଉଳ କଲବଲ ହୋଇ ଦଉଡ଼ିଲା ଢେଙ୍କିଶାଳକୁ । ଏଣେଇ ତା' ପିଛୁ ଦଉଡ଼ିଲା । ଢେଙ୍କିଶାଳରେ ଗୋଟେ ପୁରୁଣା ଢେଙ୍କି କାନ୍ଥକୁ ଡେରି ହୋଇଥିଲା । ଗୋଟେ କୁଣ୍ଡାବସ୍ତା ସେଠି ଥୁଆ ହୋଇଥିଲା । ନେଉଳ ତା' ଭିତରେ ଲୁଚିଗଲା । ଏଣେଇ ସେ ବସ୍ତା ସନ୍ଧରେ ଛକି ବସିଲା । କୁକୁର ଡେରି ହୋଇଥିବା ଢେଙ୍କି ପାଖେ ଛକିକରି ଠିଆହେଲା । ନେଉଳ ସେ ବସ୍ତା ଭିତରୁ ବାହାରିଲା ନାହିଁ । ପୁଷି ଆଉ କୁକୁର ତାକୁ ଛକି ରହିଲେ । ଯେମିତି ସେ ବାହାରିବ ତା' ଉପରକୁ କୁକୁର କୁଦିପଡ଼ି କାମୁଡ଼ି ମାରିଦେବ । କିଛି ସମୟ ଗଡ଼ିଗଲା । ଏହି ସମୟରେ ନେଉଳ ଟିକେ ବସ୍ତା ସନ୍ଧରୁ ମୁହଁ ଦେଖାଇ ଦେଲା । କୁକୁର ତା' ଦେଖି ଯେମିତି ବସ୍ତା ଭିତରେ ମୁହଁ ଗୁଞ୍ଜି ଦେଇଛି—ତା' ଦେହ ବାଜି କାନ୍ଥରେ ଡେରି ହୋଇଥିବା ଢେଙ୍କିଟା ଦୁଲ୍‌କିନା ତଳେ କଚଡ଼ି ହୋଇ ପଡ଼ିଲା ଏବଂ କୁକୁରର ପଛ ଗୋଡ଼ଟା ତା' ଭିତରେ ରହିଗଲା । ଆଉ ବାହାରିଲା ନାହିଁ । କୁକୁର ଢେର ବେଳଯାଏ ଯନ୍ତ୍ରଣାରେ କାଉଁ କାଉଁ ହେଲା । ହେଲେ ଗୋଡ଼ଟାକୁ ଢେଙ୍କିତଳୁ ବାହାର କରିପାରିଲା ନାହିଁ । ତା' ଗୋଡ଼ ଭାଙ୍ଗିଗଲା । ଏଣେଇ ଏହା ଦେଖି କୁଆଡ଼େ ଛୁ କଲା । ନେଉଳ ବି ଏଇ ସୁଯୋଗରେ ବସ୍ତା ସନ୍ଧରୁ ବାହାରି କାନ୍ଥ କରେ କରେ କଲବଲ ହୋଇ ଦଉଡ଼ି ଘରେ ପଶିଗଲା । ବହୁତ ସମୟ ପରେ ପ୍ରଧାନ ଘର ପିଲାମାନେ କୁକୁରର କାନ୍ଦଣା ଶୁଣି ଢେଙ୍କିଶାଳକୁ ଆସି ଦେଖିଲେ ଯେ ଢେଙ୍କିତଳେ ମାହାନ୍ତିଘର କୁକୁରର ଗୋଟେ ଗୋଡ଼ ରହିଯାଇଛି । ସେମାନେ ଢେଙ୍କିଟାକୁ ତଳୁ ଉଠାଇ ଦେଲେ । କୁକୁରର ଗୋଡ଼ ବାହାରିଗଲା । ତା'ପରେ ସେ ବହୁ କଷ୍ଟରେ ତା' ଭଙ୍ଗା ଗୋଡ଼କୁ ଘୋଷାରି ଘୋଷାରି କାଉଁ କାଉଁ ହୋଇ ତା ଖାମିନ୍ଦ ଘରଆଡ଼କୁ ଦଉଡ଼ିଲା । ବାସ୍—

ସେଇଦିନୁଁ ସେ ଗାଁରେ ପ୍ରଧାନ ଘର ପୁଷିକି ସମସ୍ତେ ଡାକଲେ କାଣୀ ବିରାଡ଼ି—ଆଉ ମାହାନ୍ତି ଘର କୁକୁରକୁ ଡାକଲେ ଶ୍ରେଷ୍ଠା କୁକୁର ।



ସେ ଗାଁର ମଣିଷମାନେ କେହି ଆଉ ସେଇ ହିଂସିକୁଡ଼ିଆ ଜନ୍ତୁଙ୍କୁ ଭଲ-ପାଇଲେ ନାହିଁ । ସମସ୍ତେ ତାଙ୍କୁ ଘୃଣା କଲେ । ଏପରିକି ସେ ଗାଁର ଆଉ କୋଉ ଜୀବଜନ୍ତୁ ବିଲେଇ କି କୁକୁର, ଛେଳି କି ମେଣ୍ଢା କେହି ସେମାନଙ୍କ ପାଖେ ସାଙ୍ଗ ହେଲେ ନାହିଁ । ସମସ୍ତେ ସେ ଦିହିଙ୍କି ଦୂର୍‌ଦାର୍ ମାର୍‌ମାର୍ କଲେ । କେବଳ ସେଇ ଦି'ଜଣ ଶ୍ରେଷ୍ଠା ଆଉ କାଣୀ ପରସ୍ପରରେ ସାଙ୍ଗ ହୋଇ ରହିଲେ ।

ସେଇଦିନଠୁଁ ସେଇ କାଣୀ ବିରାଡ଼ି ଆଉ ଶ୍ରେଷ୍ଠା କୁକୁର ଆପଣା କର୍ମକୁ ଆଦରି ପ୍ରଧାନ ଘର ଖଳାବାଡ଼ିରେ ସଜନା ଗଛମୂଳେ ସାଙ୍ଗ ହୋଇ ଚଢ଼ିଥାନ୍ତି । ସେଦିନ ଉପରଓଳି ଗଞ୍ଜା କୁକୁଡ଼ାଟିଏ ପୋକ ଖୋଜ-

ଖୋଜ ଖୋଜି ଆସି ପହଞ୍ଚିଗଲା । ତାକୁ ଦେଖି କାଣୀ ଚିଗଡ଼ି କହିଲା—ହଇଓ ଗଞ୍ଜା ମହାରାଜ ! ତୁମେ ଖୁବ୍ ଖୁସିରେ ଥିଲ ଭଳି ଜଣାପଡ଼ୁଛ । ଆଚ୍ଛା—ଆମ ସଙ୍ଗରେ ସାଙ୍ଗ ହେବ କି ? ଆମକୁ ଆଉ ଏ ଗାଁରେ କେହି ସାଙ୍ଗ ମିଳୁନାହାନ୍ତି । ଗଞ୍ଜା ଗୋଟେ ରଡ଼ି ଦେଇ କହିଲା—କୋ-କୋ-କୋ ! ବୁଝିଲୁ କାଣୀ ପୁଷି ! ତୁ ତ ନେଉଳ ସାଙ୍ଗେ ସାଙ୍ଗ ହୋଇ ଏକା ଘରେ ରହିପାରିଲୁ ନାହିଁ । ଓଲଟି ଏ ଗ୍ଲେଣ୍ଟା କୁକୁରକୁ ନେଇ ତାକୁ ମାଡ଼ ଦେବାକୁ ବସିଥିଲୁ । ତୁମମାନଙ୍କ ସାଙ୍ଗ କିଏ ହେବ ? କେବଳ ଏହି ନଷ୍ଟର୍ମା ହଂସୁକୁଡ଼ା ଗ୍ଲେଣ୍ଟା କୁକୁର ତୋ ସାଙ୍ଗ । ତୁମ ଦୁହିଁଙ୍କ ପ୍ରକୃତି ସମାନ । କର୍ମ ମଧ୍ୟ ସମାନ । ତୁମ ଦୁହିଁଙ୍କ କର୍ମଫଳ ମଧ୍ୟ ସମାନ । ବୁଝିଲୁ କାଣୀ ! ବୁଝିଲୁ ରେ ଗ୍ଲେଣ୍ଟା ! କ୍ୱ-କ୍ୱ-କ୍ୱ-କୋ—କ୍ୱ-କ୍ୱ-କୋ ।



# ଓଧ ବଣିଭୁଆ ସମ୍ବାଦ

ଗୋଟିଏ ବଣରେ ଗୋଟିଏ ଓଧ ଆଉ ଗୋଟିଏ ବଣିଭୁଆ ସାଙ୍ଗାତ ହୋଇଥାନ୍ତି । ଦୁଇଟିଯାକ ଜନ୍ତୁ ବଡ଼ ଆଇଁଷ-ଖାଦ୍ୟା । ପ୍ରତିଦିନ ମାଛ ନହେଲେ ଦୁହେଁଯାକ ଉପାସ ରହନ୍ତି । ତେବେ ଓଧ ପାଣିରେ ପହଁରି ପାରେ – ଗାଡ଼ିଆ, ପୋଖରୀ, ନଈ ସବୁଥିରେ ପାଣିରେ ପହଁରି ବୁଡ଼ି ସେ ମାଛ ଧରିପାରେ । ତେଣୁ ତା'ର ମାଛ ଖିଆରେ କିଛି ଅସୁବିଧା



ନଥାଏ । କିନ୍ତୁ ବଣିଭୁଆ ସିନା ମାଛ ଖାଇବାକୁ ଏତେ ରଙ୍କ, ଆଉ ହଙ୍କ ହଙ୍କ କିନ୍ତୁ ମାଛ ଧରିବା ତା' ପକ୍ଷରେ ଅସମ୍ଭବ । ସେ କେବଳ ଗାଡ଼ିଆ ପୋଖରୀ ନଈ ପାଖେ ବୁଲୁଥାଏ । ଯେତେବେଳେ ମାଛଧରାଳୀମାନେ

ଜାଲ ପକାଇ ମାଛ ଧରନ୍ତି—ତାଙ୍କ ଜାଲରୁ ସ୍ରେଷ୍ଠ ମୀନଟିଏ, କେରାଣ୍ଡିଟିଏ କି ଗଡ଼ିଇଛୁଆଟିଏ ଯେତେବେଳେ ଭୂଇଁ ଉପରେ ଖସିପଡ଼େ, ଯେତେବେଳେ ବଣଭୁଆ କଣ କରେନା—କୋଉଠି ଲୁଚିଥାଏ, ଝାପ୍ କିନା ଡେଇଁପଡ଼ି ଝାମ୍ପ ମାରି ସ୍ରେଷ୍ଠିଆ ମାଛଟିଏ ପାଟିରେ ଜାକି ବଣକୁ ପଳାଇ ଆସେ । ଆଉ ଖାଏ । କିନ୍ତୁ ସବୁଦିନେ ତାକୁ ଏମିତି ଭଲ ମାଛ ଖାଇବାକୁ କୋଉଠି ମିଳିବ ? ସବୁଦିନେ କଣ ନଈ ପୋଖରୀରେ ଜାଲ ପକାଇ କିଏ ମାଛ ଧରୁଛି ?

ଓଧର କିନ୍ତୁ ସେଥିପାଇଁ ପରୁଆ ନଥାଏ । ଯେମିତି ସଞ୍ଜବୁଡ଼େ, ରାତି ପହରେ ହୋଇଯାଏ - ଓଧ କଣ କରେ ନା ଛପିଛପି ବଣରୁ ବାହାରିଯାଏ । ଗାଁରେ ଯୋଉ ଦୁଇ ତିନଟା ପୋଖରୀ ଅଛି, ସେଥିରୁ କୋଉ ଗୋଟାକରେ ପଶିଯାଏ । ଓଧ ତ ପାଣିରେ ବୁଡ଼ିବାରେ ପହଁରିବାରେ ଭାରି ବିଚକ୍ଷଣ । ରାତି ଅଧଯାଏ ପୋଖରୀ ଭିତରେ ବୁଡ଼ୁଥାଏ – ଉଠୁଥାଏ —ପହଁରୁଥାଏ । ମାଛମାନେ ତା’ ଡରରେ କଲବଲ ହୋଇ ପ୍ରାଣ-ବିକଳରେ ପାଣି ଭିତରେ ପହଁରି ପଳାଉଥାନ୍ତି । କେହି କେହି ମାଛ ଉପରକୁ ଡିଆଁ ମାରି ଆଉଠାଏ ଯାଇ ପଡ଼ୁଥାନ୍ତି । ପୋଖରୀରେ ନାନା ପ୍ରକାର ମାଛ ଥାନ୍ତି । ରୋହି, ଭାକୁର, ମାଗୁର, ଶେଉଳ, ଗଡ଼ିଶା, କଉ, କେରାଣ୍ଡି ଏମିତି ଏମିତି କେତେ ମାଛ । ଓଧ ମୁହଁରୁ ସବୁ ମାଛ ବର୍ତ୍ତି ପାରନ୍ତି ନାହିଁ । ନିଶ୍ଚେ ଗୋଟାଏ ବଡ଼ ମାଛ – ରୋହି ହେଉ କି ଭାକୁର ହେଉ କି ଶେଉଳ ହେଉ ଓଧ ଧରିବ ଇ ଧରିବ । ଏମିତି ଏମିତି ସବୁଦିନେ ରାତିଅଧରେ ଓଧ ବଡ଼ ମାଛଟିଏ ଧରି ବଣକୁ ଫେରେ । ବଣ ଭିତରେ ତା’ ଗାତ ପାଖେ ତା’ ସଙ୍ଗାତ ବଣଭୁଆ ଅପେକ୍ଷା କରି ବସିଥାଏ । ତା’ ପେଟ ଭୋକରେ ଜଳୁଥାଏ । ଓଧ ଯେମିତି ବଡ଼ ମାଛଟିଏ ଆଣି ପହଞ୍ଚ ଯାଏ—ବଣଭୁଆ ସେମିତି ଓଧ ପାଖକୁ ଦଉଡ଼ି ଯାଇ କହେ—ସଙ୍ଗାତ ! ତୁମଭଳି ସାଙ୍ଗ ମୋର ଆଉ କିଏ ଅଛି ? ତୁମ ସାଙ୍ଗେ ସାଙ୍ଗ ହେଲା ଦିନୁଁ - ତୁମ ଦୟାରୁ ମତେ ପ୍ରତିଦିନ ମାଛ ଟିକିଏ ଖାଇବାକୁ ମିଳୁଛି । ଓଧ କଣ କରେନା ମାଛଟିକୁ ଦି’ଭାଗ କରେ – ଭାଗେ ସଙ୍ଗାତକୁ ଦିଏ– ଆଉ ଭାଗଟି ନିଜେ ଖାଏ । ଏମିତି ଏମିତି ଦି’ସଙ୍ଗାତ ବଣରେ ଖୁବ୍ ଖୁସି ହୋଇ ରହିଥାନ୍ତି । ବିନା ପରିଶ୍ରମରେ ମାଗଣାରେ ସବୁଦିନେ

ମାଛ ଖାଇବାକୁ ମିଳୁଥିବାରୁ ବଣଭୁଆ ଖୁବ୍ ସ୍ୱାର୍ଥପର ହୋଇଗଲା—ଆଉ ମଧ୍ୟ ଅଳସୁଆ ହୋଇଗଲା । ସେ ଆଉ କିଛି କାମ କଲା ନାହିଁ—କୁଆଡ଼େ ବୋଲି କୁଆଡ଼େ ବାହାରିଲା ନାହିଁ । ଖାଲି ମାଛ ଖାଇଦେଇ ଶୋଇ ରହିଲା ।

ଦିନେ ଓଧ କହିଲା—ସଙ୍ଗାତ ! ମୋର ଗୋଟିଏ ପୁଅ ହୋଇଛି । ଆମ ଘରେ ସମସ୍ତଙ୍କ ମନ ଭାରି ଖୁସି । ଆମେ ଭାବୁଛୁ—କାଲି ଏ ବଣର ସାଙ୍ଗଜନ୍ତୁମାନଙ୍କୁ ଆମେ ଗୋଟିଏ ବଣଭୋଜି ଦେବା । ଆମ ଭୋଜିକି ଅବଶ୍ୟ ବାଘ, ଭାଲୁ, ସିଂହ ଆସିବେ ନାହିଁ । ସେମାନେ ବଡ଼ଲୋକ । ଆମ ସାଙ୍ଗ ହିଁ ନୁହନ୍ତି ତେବେ ବିଲୁଆ ନନା ଆସିବେ—କୋକିଶିଆଳି କେକେଇ ଆସିବେ । ହରିଣ ଭାଇନା ଆସିବେ । ମାଙ୍କଡ଼ ମଉସା ତ ନିଶ୍ଚେ ଆସିବେ ! ଏମାନଙ୍କ ଛଡ଼ା ମଧ୍ୟ ଆସିବେ—ପାହାଡ଼ିଆ ବଣୁଆ ମୁଷା—ଗୋଧି—ଏଣ୍ଡୁଅ—ନେଉଳ ଭାଇ—ଶାଳିଆପତନୀ ପ୍ରଭୃତି ବନ୍ଧୁମାନେ । ମୁଁ ଭାବୁଛି—ଭଲକରି ଖୁଆଇବା ବନ୍ଧୁମାନଙ୍କୁ । କେତେଦିନ ହେଲାଣି ବନ୍ଧୁମାନେ ମୋ ଘରେ ପଦର ପକେଇ ନାହାନ୍ତି । କଣ କହୁଛ ?

ବଣଭୁଆ କହିଲା—ଭଲ କଥା, ଖୁବ୍ ଭଲ କଥା—ଅତି ଉତ୍ତମ କଥା - ଢେର୍ ଭଲ କଥା । ଭୋଜି କର । ବନ୍ଧୁମାନେ ଆସନ୍ତୁ—ଖାଆନ୍ତୁ ମନଇଚ୍ଛା—ମଉଜ କରନ୍ତୁ—ଆମେ ବି ଖାଇବା—ମଜା କରିବା ।

ଓଧ କହିଲା ସେକଥା ତ ଠିକ୍ ସଙ୍ଗାତ । ହେଲେ ଆମକୁ ତ ଫେର ଖାଇବା ଜିନିଷ ସଂଗ୍ରହ କରିବାକୁ ହେବ ? ମାଙ୍କଡ଼ମାନେ ଆମିଷ ଖାଆନ୍ତିନି । ତାଙ୍କପାଇଁ ଫଳମୂଳ ଦରକାର । ହରିଣମାନଙ୍କ ପାଇଁ ଗହମ, ଚାଉଳ ଆଉ କଅଁଳିଆ ଶାଗ । ଅନ୍ୟମାନେ ମାଛ ଖାଇବେ । ମାତ୍ର ସମସ୍ତଙ୍କ ପାଇଁ ଗୋଟାଏ ବଢ଼ିଆ କ୍ଷୀରି ମଧ୍ୟ କରିବା ।

ବଣଭୁଆ କହିଲା—ନିଶ୍ଚୟ କ୍ଷୀରି କରିବା । କ୍ଷୀରି ଭାରି ସୁଆଦିଆ ପଦାର୍ଥ । ମାଛ ଖାଇସାରି ଆମେ କ୍ଷୀରି ଖାଇବା । ବଢ଼ିଆ ଭାରି ବଢ଼ିଆ । ଖୁବ୍ ବଢ଼ିଆ—ବାଃ ବାଃ କି ମଜା ।

ଓଧ କହିଲା—କିନ୍ତୁ ସଙ୍ଗାତ ! ମୁଁ ସିନା ମାଛ, ଗହମ, ଶାଗ ସବୁ ଯୋଗେଇ ଦେବି । କ୍ଷୀରି କୋଉଠୁ ପାଇବି ? ତୁମେ ଗୋଟେ କଥା

କର — ଗାଁକୁ ଯାଇ ଗାଈ ମଇଁଷିମାନଙ୍କଠାରୁ କିଛି ଦୁଧ ଆଣ । କ୍ଷୀର କରିବା । ବଣଭୁଆ ତ ଅଳସୁଆ । ମାଗଣାରେ ମାଗିଣାରେ ଖାଇ ବଞ୍ଚିଛି । ସେ କହିଲା—ସଙ୍ଗାତ ! ଗାଈ ମଇଁଷିଙ୍କ ପାଖରେ ଆଉ ଆଜିକାଲି ଦୁଧ ମିଳିବ ନାହିଁ । ସେମାନଙ୍କ ପାଖକୁ ଗଲେ ସେମାନେ ନାଡ ମାରିବେ । ମୁଁ ମରିଯିବି । ଓଧ କହିଲା --ତାହେଲେ ତୁମେ କିଛି ଗହମ କି ଗୁଡ଼ଳ ହେଲେ କୋଉଠୁ ସଂଗ୍ରହ କରି ଆଣ । ଅଳସୁଆ ମାଗେଣାଖିଆ ବଣଭୁଆ କହିଲା—ଆରେ ବାପ୍‌ରେ ! ଆଜିକାଲି ମଣିଷମାନେ ଠେଙ୍ଗା ବନ୍ଧୁକ ଧରି ବିଲ ସବୁ ଜଗି ବସିଛନ୍ତି । ଗହମ କେଣ୍ଡାଏ କି ଧାନ କେଣ୍ଡାଏ ଛିଣ୍ଡାଉ ଛିଣ୍ଡାଉ ମାରି ପକାଇବେ । ସେଇଠୁ ଓଧ କହିଲା—ହଉ ହେଲା – ତୁମେ ଏବେ ଆଜି କିଛି ଆମ୍ବ, ପଣସ ଆଉ କଦଳୀ ସଂଗ୍ରହ କରି ଆଣ । କାରଣ ମାଙ୍କଡ଼ମାନେ ତ ଫଳ ଛଡ଼ା ଆଉ କିଛି ଖାଇବେ ନାହିଁ ।

ମାଗଣାଖିଆ ଅଳସୁଆ ବଣଭୁଆ ମୁଣ୍ଡ ହଲାଇ ହଲାଇ କହିଲା— ଓହୋ ! ହେ ଭଗବାନ ! ସଙ୍ଗାତ ! ଆମ୍ବ ପଣସ କଦଳୀ ନାଁ ଆଉ ତୁଣ୍ଡରେ ଧର ନାହିଁ । ସବୁ ବଗିଚାରେ ବଦମାସ୍ ମଣିଷମାନେ ଠେଙ୍ଗା ବନ୍ଧୁକ ଧରି ଫଳନ୍ତା ଗଛ ସବୁକୁ ଦିନରାତି ଜଗି ବସିଛନ୍ତି । ତେମେ ତା' ଭିତରେ ପଶିଲା ମାତ୍ରେ ବସିବ—ପାହାର—ନହେଲେ ଢୁଃ । ଦାନ୍ତ ନିକୁଟି ମରି ପଡ଼ିବ । ଫଳମୂଳ କଥା ଛାଡ଼ । 

ଓଧ ଏଥର ବଣଭୁଆର ମନକଥା ବୁଝିପାରିଲା । ସେ ବୁଝି- ପାରିଲା ଯେ ବଣଭୁଆର ମାଗଣା ଖାଇବା ଅଭ୍ୟାସ ହୋଇଯାଇଛି । ସେ ଆଉ ଟିକିଏ ବି ପରିଶ୍ରମ କରିବାକୁ ଇଚ୍ଛା କରୁ ନାହିଁ । କି ତା' ମନରେ ବି କାହାପ୍ରତି ସ୍ନେହ ଶରଧା ନାହିଁ । ସବୁ କଥା ବୁଝି ସେ ଚୁପ୍ ରହିଲା ।

ସେଦିନ ରାତିରେ ଓଧ ବଣଭୁଆକୁ ଡାକି କହିଲା—ସଙ୍ଗାତ ! ମୋ ସାଙ୍ଗରେ ଆସ । ଆଜି ମୋ ଦେହଟା ଭଲ ଲାଗୁନାହିଁ । ଟିକିଏ ଖାଲି ଦୁର୍ବଳ ଲାଗୁଛି । ମୁଁ ଏକୁଟିଆ ମାଛ ଧରିପାରିବି ନାହିଁ । ତୁମକୁ ବେଶୀ- କିଛି କରିବାକୁ ହେବନାହିଁ । ତୁମେ ପୋଖରୀ ପାହାଚ ଉପରେ ବସିଥିବ ଥିଇରି ହୋଇ । ମୁଁ ମାଛଟିଏ ପୋଖରୀରୁ ଧରିଆଣି ତୁମ ଜିମା ଦେବି ।

ତୁମେ ତା' ଲାଞ୍ଜକୁ କାମୁଡ଼ି ଧରି ବସିବ । ମୁଁ ଆଉ ଗୋଟିଏ ମାଛ ଧରି-ସାରିଲା ପରେ ଦୁହେଁଯାକ ଦୁଇଟି ମାଛ ଧରି ଫେରିବା । ଗୋଟିଏ ଆଜି ରାତିରେ ଖାଇଦେବା । ଆଉଟି କାଲି ଭୋଜପାଇଁ ରଖିଦବା । ଯୋଡ଼ିଏ ବଡ଼ ରୋହି ହେଲେ ଆମର ଚଳିବ ।

ବଣଭୂଆ ଆଉ କଣ କରିବ । ବାଧହୋଇ ରାଜି ହେଲା । ପୋଖରୀ ପାହାଚ ଉପରେ ଯାଇ ବସିଲା । ଓଧ ବହୁତ ସମୟ ପାଣିରେ ବୁଡ଼ି ବୁଡ଼ି ଗୋଟାଏ ବଡ଼ ରୋହି ଧରିଆଣି ବଣଭୂଆ ପାଖେ ହାଜର କଲା । କହିଲା—ସଙ୍ଗାତ ଧରି ଧରି ଚାଖିଲ । ତା ଲାଞ୍ଜଟାକୁ ଦାନ୍ତିରେ କାମୁଡ଼ିଧରି ଚାଖିଲ । ମୁଁ ଆଉ'ଗୋଟାଏ ଆଣିବାକୁ ପାଣିରେ ବୁଡ଼ିବି । ଓଧ କଥା ଶୁଣି ବଣଭୂଆ ରୋହୀ ମାଛଟିର ଲାଞ୍ଜକୁ କାମୁଡ଼ି ଧରିଲା । ମାତ୍ର ସେ ତ ମସ୍ତବଡ଼ ରୋହି । ମାରିଲା ଏମିତି ଡିଆଁ ଯେ, ବଣଭୂଆକୁ ଧରି



ଯାଇ ଫେର୍ ପଡ଼ିଲା ପାଣି ଭିତରେ । ରୋହିଟା ପାଣିରେ ପହଁରି ବୁଡ଼ିଗଲା । ମାତ୍ର ବଣଭୂଆ ବିଚରା କଣ କରିବ ? ତାକୁ ତ ପହଁରି ଆସେନାହିଁ । ଢୋକ ଢୋକ କରି ପାଣି ପିଇଗଲା ଓ ଦୁଇ ଚାରିଥର ପାଣିରେ ବୁଡ଼ି ଅଣନିଃଶ୍ୱାସୀ ହୋଇଗଲା । ଏକଥା ଦେଖିପାରିଲା ତାର ସଙ୍ଗାତ ଓଧ । ସେ ଚଟ୍‌କନା ଧାଇଁଆସି ବଣଭୂଆର ଲାଞ୍ଜକୁ ଧରି ପହଁରି ପହଁରି କୂଳରେ ଆଣି ତାକୁ ଛାଡ଼ିଦେଲା । ସେତେବେଳକୁ ବଣଭୂଆର ପ୍ରାଣଯିବା ଉପରେ । ଓଧ ତାକୁ ବହୁତ ସାନ୍ତ୍ୱନା କରି ତା' ପେଟ ଭିତରୁ ପାଣିତକ ବାହାର କରିଦେଲା । ବଣଭୂଆ କୌଣସି ପାହାହେଉ ବଞ୍ଚିଗଲା । ତା'ପରେ

ଓଧ ତାକୁ କହିଲା—ବୁଝିଲ ସଙ୍ଗାତ ! ପେଟ ପାଇଁ କେତେ ଶ୍ରମ କରିବାକୁ ହୁଏ ବୁଝିଲ ତ ? ଦେଖ ! କାଲିଠାରୁ ମୁଁ ଆଉ ତୁମକୁ ମାଗଣାରେ ମାଛ ଖାଇବାକୁ ଦେବିନାହିଁ । କାଲି ଚାଲ ! ମୁଁ ତୁମକୁ ପାଣିରେ ବୁଡ଼ା ପହଁରା ଶିଖାଇ ଦେବି । ସେତକ ଶିଖିଥିଲେ ଆମେ ଦୁହେଁଯାକ ମିଶି ପ୍ରତିଦିନ ମାଛ ଧରିବା—ଆଉ ସମସ୍ତଙ୍କୁ ବି ଖୁଆଇବା ।

ବଣ୍ଢେଆ ଆଉ କଣ ଉତ୍ତର ଦେବ ? ବାଧ୍ୟ ହୋଇ କହିଲା—ହଉ ସଙ୍ଗାତ ହଉ । ମତେ ଆଗ ପହଁରା ଶିଖାଇ ଦିଅ ।



# ସତ କୁରାଢ଼ୀ ଓ ମିଛ କୁରାଢ଼ୀ

ଗରିବ କାଠୁରିଆଟିଏ ପ୍ରତିଦିନ କାନ୍ଧରେ କୁରାଢ଼ୀଟିଏ ପକାଇ ବଣକୁ ଯାଏ କାଠ କାଟିବାକୁ । ଯେତିକି କାଠ ଆଣେ, ସେତିକି ବିକ୍ରି କରି ଚଳୁଥାଏ । ଦିନେ ସେ ବଣ ଭିତରେ ଗୋଟିଏ ଗଛରେ ଚଢ଼ି କାଠ ହାଣୁଥାଏ । ସେଇ ଗଛଟି ଥିଲା ଗୋଟିଏ ମସ୍ତବଡ଼ ଗଭୀର ପୋଖରୀର ହୁଡ଼ା ଉପରେ । ତେଣୁ କାଠୁରିଆଟି ଖୁବ୍ ସାବଧାନରେ କାଠ ହାଣୁଥାଏ । ମାତ୍ର ଅତି ସାବଧାନ ହେଉ ହେଉ, ତା' ହାତରୁ ହଠାତ୍ କୁରାଢ଼ୀଟି ପୋଖରୀ ଭିତରକୁ ଖସି ପଡ଼ିଲା । ପୋଖରୀ ଭିତରେ ଅଥଳ ଥଳ ପାଣି । କୁରାଢ଼ୀଟି ଟୁବ୍ କରି ସେଇ ଗଭୀର ଜଳରେ ବୁଡ଼ିଯାଇ ଅଦୃଶ୍ୟ ହୋଇଗଲା । ସେଇଠୁ କାଠୁରିଆଟି ଗଛରୁ ଓହ୍ଲାଇ ଆସି ପୋଖରୀ ହୁଡ଼ାରେ ବସି କାନ୍ଦିବାକୁ ଲାଗିଲା ।

ହେ ଭଗବାନ ! ମୋ କୁରାଢ଼ୀଟି ଗଲା ! ମୁଁ ଏବେ କାଠ କାଟିବି କେମିତି ? ମୋ ପିଲାଏ ଅବା ଚଳିବେ କେମିତି ?

ଏମିତି କାନ୍ଦୁଛି, ହଠାତ୍ ପାଣି ଭିତରୁ ଜଳଦେବତା ବାହାରିଲେ । ସେ ତାଙ୍କ ହାତରେ ସୁନାରେ ତିଆରି କୁରାଢ଼ୀଟିଏ ଧରି କାଠୁରିଆକୁ ଦେଖାଇ କହିଲେ—

ଆରେ ବାବୁ ! ଦେଖ ତ ! ଏ ସୁନା କୁରାଢ଼ୀଟି ଯଦି ତୁମର ହୋଇଥାଏ, ତେବେ ନେଇଯାଅ ।

କାଠୁରିଆ ସୁନା କୁରାଢ଼ୀଟିକୁ ଦେଖି କହିଲା—ନା-ନା, ଏ କୁରାଢ଼ୀଟା ମୋର ନୁହେଁ । ମୁଁ ଏଟାକୁ ନେବି ନାହିଁ ।

ସେଇଠୁ ଜଳଦେବତା ପାଣିରେ ବୁଡ଼ିଯାଇ, କିଛି ସମୟ ପରେ ରୂପାର କୁରାଢ଼ୀଟିଏ ଧରି ପାଣି ଭିତରୁ ଉଠିଲେ । ପଚାରିଲେ– ଆରେ କାଠୁରିଆ ! ଦେଖ ତ । ଏ କୁରାଢ଼ୀଟା ଯଦି ତୁମର– ତେବେ ତୁମେ ଯାକୁ ନେଇ ଯାଇପାର ।

ମାତ୍ର କାଠୁରିଆ ସେଇ ରୂପାର କୁରାଢ଼ୀଟିକୁ ଦେଖି କହିଲା— ନା–ନା, ଏ କୁରାଢ଼ୀଟି ମୋର ନୁହେଁ । ମୁଁ ଯାକୁ କାହିଁକି ନେବି ?

ସେଇଠୁ ଜଳଦେବତା ଆଉଥରେ ପାଣିରେ ବୁଡ଼ି ସତକୁ ସତ କାଠୁରିଆର ସେଇ ଲୁହାର କୁରାଢ଼ୀଟି ଧରି ତାକୁ ପଚାରିଲେ—



ଆହେ କାଠୁରିଆ ! ଦେଖ ! ଯଦି ଏ କୁରାଢ଼ୀଟା ତୁମର ହୋଇଥାଏ— ତେବେ ତୁମେ ଯାକୁ ନେଇଯାଅ ।

କାଠୁରିଆଟି ନଜରେ ଲୁହା କୁରାଢ଼ୀଟିକୁ ଦେଖି ଅତି ଖୁସି ହୋଇ ହାତଯୋଡ଼ି କହିଲା—

—ମହାପ୍ରଭୁ ! ଆପଣଙ୍କୁ କେଉଁ ଭାଷାରେ କୃତଜ୍ଞତା ଜଣାଇବି ? ଏଇ ଲୁହା କୁରାଢ଼ୀଟି ମୋର । ମତେ ମୋ କୁରାଢ଼ୀଟିକୁ ଦୟାକରି ଫେରେଇ ଦିଅନ୍ତୁ ।

ଜଳଦେବତା କାଠୁରିଆର ସତପଣିଆ ଆଉ ସାଧୁ ସରଳ ଆଚରଣ ଦେଖି ଖୁବ୍ ଖୁସି ହୋଇଗଲେ । ସେ ତାକୁ ତାର ଲୁହା କୁରାଢ଼ୀଟି ତ ଫେରେଇ ଦେଲେ । ତା' ସହିତ ପୂର୍ବର ସେହି ସୁନା ଓ ରୂପାର କୁରାଢ଼ୀ ଦୁଇଟି ମଧ୍ୟ ତା' ହାତକୁ ବଢ଼ାଇ ଦେଇ କହିଲେ— ଆହେ କାଠୁରିଆ ! ତୁମେ ଅତ୍ୟନ୍ତ ଗରିବ ହେଲେ ବି ତୁମର ସାଧୁତା ଓ ସଚ୍ଚୋଟପଣିଆ ଦେଖି ମୁଁ ଖୁସି ହେଲି । ତେଣୁ ଏଇ ସୁନା ଆଉ ରୂପା କୁରାଢ଼ୀ ଦୁଇଟି ମୁଁ ତୁମକୁ ପୁରସ୍କାର ଦେଲି ।

କୁରାଢ଼ୀ ତିନୋଟି ଧରି କାଠୁରିଆଟି ଜଳଦେବତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲା ଓ ଖୁବ୍ ଖୁସିମନରେ ଗ୍ରାମକୁ ଫେରି ଆସିଲା । ଗାଁରେ ପହଁଞ୍ଚି ସେ ସମସ୍ତଙ୍କୁ ଏହି ବୃତ୍ତାନ୍ତଟି ଜଣାଇଲା । ଗ୍ରାମବାସୀମାନେ ତାକୁ ଖୁବ୍ ପ୍ରଶଂସା କଲେ । ମାତ୍ର ସେଇ ଗାଁରେ ଗୋଟିଏ ଘୋର ମିଥ୍ୟାବାଦୀ, ଲୋଭୀ ଓ ଠକ ଲୋକ ଥାଏ । ସେ ଯେମିତି ଏକଥା ଶୁଣିଛି —ତା' ଆରଦିନ ଗୋଟିଏ ଲୁହା କୁରାଢ଼ୀ ଧରି ସେଇ ପୋଖରୀ ହୁଡ଼ାରେ ଥିବା ଗଛ ପାଖକୁ ଗଲା । ଗଛ ଉପରେ ଚଢ଼ି ଗୋଟିଏ ଡାଳ ଉପରେ ଥୁଇ ଢୁଳେଇଟେ ପକାଇଛି କି ନାହିଁ— ହଠାତ୍ କି ତା' ହାତରୁ କୁରାଢ଼ୀଟା ଥୁଆଁକୁ ଖସି ପଡ଼ିଲା—ଏମିତି ଭାବେ କୁରାଢ଼ୀଟାକୁ ଜାଣି ଜାଣି ପାଣି ଭିତରକୁ ପକାଇ ଦେଲା । ଲୁହାର କୁରାଢ଼ୀଟି ଟୁବ୍ କିନା ପୋଖରୀର ଅଥଳ ଥଳ ପାଣି ଭିତରେ ବୁଡ଼ିଯାଇ ଅଦୃଶ୍ୟ ହୋଇଗଲା । ସେଇଠୁ ସେହି ଲୋଭୀ ଠକ କଣ କଲା ନା, ଗଛରୁ ଓହ୍ଲାଇ ଆସି ପୋଖରୀ ହୁଡ଼ାରେ ବସି ମିଛେ ମିଛେ ଆଖିରୁ ଲୁହ ଗଡ଼ାଇ କାନ୍ଦିବାକୁ ଲାଗିଲା ।

ଓହୋ ! ହେ ଭଗବାନ ! ମୋ ଭାଗ୍ୟ କି ଖରାପ ! ମୋ କୁରାଢ଼ୀଟି ହାତରୁ ଖସି ପଡ଼ି ପାଣିରେ ବୁଡ଼ିଗଲା । ଓହୋ ! ମୁଁ ଆଉ କେମିତି ଚଳିବି ? ହେ ଭଗବାନ ମୋର ଆଉ ବଞ୍ଚିବା କଣ ଦରକାର ? ଓହୋ !!

ମୁହୂର୍ତ୍ତକ ଭିତରେ ସେଇ ପୋଖରୀର ଅଥଳ ଥଳ ପାଣି ଭିତରୁ ସୁନାର କୁରାଢ଼ୀଟିଏ ଧରି ଜଳଦେବତା ବାହାରି ପଡ଼ିଲେ । ଏବଂ ସେଇ ସୁନା କୁରାଢ଼ୀଟିକୁ ଦେଖାଇ ପଚାରିଲେ—

ଆହେ କାଠୁରିଆ ! ଦେଖ ତ ! ଏଇ କୁରାଢ଼ୀଟି ତୁମର କି ? ଯଦି ତୁମର ହୋଇଥାଏ, ତେବେ ନେଇଯାଅ ।

ଲୋଭୀ ଆଉ ମିଛୁଆ ସେଇ କାଠୁରିଆଟି ଦେଖିଲା—ଜଳ-ଦେବତାଙ୍କ ହାତରେ ଯେତକୁ ସେତ ସୁନାର କୁରାଢ଼ୀଟିଏ ଚକ୍‌ମିକ୍ କରୁଛି । ସେ ଆଉ ଲୋଭ ସମ୍ଭାଳି ନପାରି ଧୈର୍ଯ୍ୟ ହରାଇ ସାଙ୍ଗେ ସାଙ୍ଗେ ତରତର ହୋଇ କହିଉଠିଲା—



ହଁ ମହାପ୍ରଭୁ ! ହଁ ସେଇ କୁରାଢ଼ୀଟି ଆଜ୍ଞା ମୋର । ମୁଁ ତାକୁ ଛ’ମାସ ତଳେ ବାସୁଦେବପୁର ହାଟରୁ ପାଞ୍ଚ ଟଙ୍କା ଦେଇ କିଣିଥିଲି ଆଜ୍ଞା ! ଚଞ୍ଚଳ ମୋ କୁରାଢ଼ୀଟି ମୋ ହାତକୁ ବଢ଼ାଇ ଦିଅନ୍ତୁ ମହାପ୍ରଭୁ ! ଓହୋ ! ହେ ଭଗବାନ ! ମୋ ସାଧୁ ସଚ୍ଚୋଟପଣିଆ ଦେଖି ତୁମ ହୃଦୟ

ଚରିଗଲା । ମୁଁ ତୁମକୁ କେଉଁ ଭାଷାରେ ଧନ୍ୟବାଦ ଦେବି ? ଦିଅନ୍ତୁ — ଦିଅନ୍ତୁ ମହାପ୍ରଭୁ ! ଚଞ୍ଚଳ ମୋ କୁରାଢ଼ୀଟି ମୋ ହାତକୁ ବଢ଼ାଇ ଦିଅନ୍ତୁ ।

ସେଇ ଲୋଭୀ ଆଉ ମିଥ୍ୟାବାଦୀ କାଠୁରିଆଟିର ମୁହଁରୁ ଏଇ ଘୋର ମିଥ୍ୟାକଥା ଶୁଣିବା ମାତ୍ରେ ଜଳଦେବତା ଅଟ୍ଟହାସ୍ୟ କରି ଉଠିଲେ—

ହାଃ-ହାଃ ହାଃ ! ଆରେ ମିଥ୍ୟାବାଦୀ ! ଲୋଭୀ, ଶଠ ! ତୁ ବଡ଼ ହତଭାଗା । ତୋର ଏହି ମିଥ୍ୟା ଆଚରଣ ଯୋଗୁଁ ଏଇ ସୁନା କୁରାଢ଼ୀଟି ତ ତୋତେ ମିଳିବ ନାହିଁ—ତୁ ତୋର ନିଜର ସେଇ ଲୁହା କୁରାଢ଼ୀଟିକୁ ମଧ୍ୟ ଆଉ ପାଇବୁ ନାହିଁ ।

ଏତିକି କହି ଜଳଦେବତା ଟୁବ୍ କିନା ପାଣିରେ ବୁଡ଼ିଯାଇ କୁଆଡ଼େ ଅଦୃଶ୍ୟ ହୋଇଗଲେ । ସେଇ ଠକ ମିଛୁଆ କାଠୁରିଆଟି ଏ ଘଟଣାରେ ଅତ୍ୟନ୍ତ ଦୁଃଖିତ ହୋଇ ଶୂନ୍ୟ ହାତରେ ଘରକୁ ଫେରି ଆସିଲା ।

କିନ୍ତୁ ଆନନ୍ଦର କଥା ହେଲା—ସେଇ ଘଟଣା ପରଠାରୁ ସେ ଆଉ କେବେ ବି ମିଛ କଥା କହିଲା ନାହିଁ । ଆଉ ଅନ୍ୟର ଜିନିଷ ପ୍ରତି ମଧ୍ୟ ତା' ମନରୁ ଲୋଭ ଛାଡ଼ିଗଲା ।



# ଗଧଟା ସତରେ ଗଧ

ଯେତେଦିନ ପର୍ଯ୍ୟନ୍ତ ମୁଁ ବି ଗଧ ଥିଲି ସେତେଦିନଯାଏ ମୁଁ ଜାଣି ନ ଥିଲି ଯେ ଗଧଟା ପ୍ରକୃତରେ ଗଧଟାଏ । ସଂସ୍କୃତରେ ଗଧକୁ "ଗର୍ଦ୍ଦଭ" ବା "ରାସଭ" କହିଲେ ବି ଗଧର ପ୍ରକୃତ ସେହି ଗଧ । ମୁଁ ଏ ପର୍ଯ୍ୟନ୍ତ ଜାଣିନି "ହେଟାବାଘ"କୁ ବି "ଗଧ" ବିଶେଷ୍ୟର ବିଶେଷଣ "ଗଧିଆ" ପଦବୀ କାହିଁକି ମିଳିଛି ! ତେବେ ଗଧ ଜୀବଟା ଯେ ସତରେ ଗଧ ଏ କଥାରେ ଆଉ ମୋର ସନ୍ଦେହ ନାହିଁ ।

ଏଇ ଗଧ ଜୀବଟା ଉପରେ ମୋର ଆଗରୁ ଟିକେ ଦୟାଭାବ ଥିଲା । ଆହା ବିଚରା ଗଧ !! ଘୋଡ଼ା ପରି ପ୍ରାୟ ଦେଖିବାକୁ । ପ୍ରାଣୀ-ତତ୍ତ୍ୱବିତ୍‌ମାନେ ଗଧକୁ ଘୋଟକ ଜାତୀୟ ବୋଲି କହନ୍ତି । ଗଧ ଉପରେ ବି ସମାଜର କେତେକ ବ୍ୟକ୍ତି ବସନ୍ତି···ଜନପଦ ବୁଲାନ୍ତି; ମାତ୍ର ଗଧକୁ ଘୋଡ଼ାର ସମ୍ମାନରୁ ଏକ ଶତାଂଶ ବି ମିଳେ ନାହିଁ । ଗଧଦୁଧ ପିଲାମାନଙ୍କ ପକ୍ଷେ ଭାରି ଉପକାରୀ । ସହଜରେ ହଜମ ହୁଏ । କୃମି ନାଶ କରେ । ମାତ୍ର ତାଙ୍କ କଥା ଛାଡ଼ିଦିଅ—ଛେଳିର ସମ୍ମାନ ବି ଗଧ ବିଚରା ପାଇଲା ନାହିଁ । ଗଧଟା ନିପଟ ଗଧ । ଆହା ବିଚରା ଗଧ !! ବିଚରା ରାସଭ !!

ସବୁ ଜୀବ ବୋବାଳି ଛାଡ଼ିବେ । ଘୋଡ଼ା ଯେମିତି ଅଭଦ୍ରଙ୍କ ପରି ସ୍ଥାନକାଳପାତ୍ର ନ ବିଚାରି ହିଁ ହିଁ ହୋଇ ହସେ—ଗାଈ ଯେପରି ନେଥେଇଫୁଲି ମାଇପଙ୍କ ଭଳି ବାଛୁରୀ ପାଇଁ ବିକଟ ହମା ହମା କରେ—ହାତୀ ଯେପରି ନୂଆ ରେଳଇଞ୍ଜିନ୍‌ର ହୁଇସିଲ୍ ପରି କର୍ଣ୍ଣକଟୁ ଚିତ୍କାର ଛାଡ଼େ— ଛେଳିଗୁଡ଼ାକ ଯେପରି ମାଇଚିଆଙ୍କ ଭଳି ମେଁ ମେଁ କରନ୍ତି—

ଯେ କୌଣସି ସ୍ୱରଜ୍ଞାନବିଶିଷ୍ଟ ଧ୍ୱନିବିଜ୍ଞାନୀ ମସ୍ତିଷ୍କବାନ ଓ ହୃଦୟବାନ୍ ବ୍ୟକ୍ତି ହୁଏତ ଏଇ ପଶୁଗୁଡ଼ାଙ୍କୁ ବଳି ଦେବାକୁ ପ୍ରସ୍ତାବ ଦିଅନ୍ତା । ମାତ୍ର ଏ ମୂର୍ଖ ମଣିଷ ଜାତି—ସେ ସବୁ ଚିତ୍କାର ସହିବେ; ଅଥଚ ଗଧ ବିଚାରା ଯଦି ଟିକେ କାରଣେ ଅକାରଣେ ଶ୍ରୀମୁଖ ଖୋଲିଲା—ତେବେ ଅଶ୍ଳୀଳ ଗାଳି ସହିତ କେତେ ଅଭିଶାପ ଭୋଗିବାକୁ ପଡ଼ିବ ବିଚାରାକୁ । ଆହା ! ବିଚାରା ଗର୍ଦ୍ଦଭ !!

ଗଧ ପ୍ରତି ଏହିସବୁ ସାମାଜିକ ବୁର୍ଜୋୟା ଅତ୍ୟାଚାର ଯୋଗୁଁ—ମୁଁ ଗଧକୁ ଅତି ସହାନୁଭୂତିଶୀଳ ଆଖିରେ ଦେଖୁଥିଲି । ମାତ୍ର ପ୍ରକୃତରେ ଯେ ତୁଳସୀ ଦୁଇ ପତରୁ ବାସିଲା ଭଳି ଗଧ ପ୍ରତି ସହାନୁଭୂତିଶୀଳ ହେବାରେ ମୋର ବାଲ୍ୟକାଳରୁ ଭବିଷ୍ୟତରେ ମହାତ୍ମା ହେବାର ଗନ୍ଧ ଉକୁଟି ଆସୁଥିଲା ତାହା ନୁହେଁ—ଗଧ ପ୍ରତି ମୋର ଦୟାଭାବ ଆସିଲା ସେହିଦିନ—ଯେଉଁଦିନ ମୋର କ୍ଲାସ୍ ଶିକ୍ଷକ ଟ ୪୫ କୁ ତିନିଜଣଙ୍କ ମଧ୍ୟରେ ବାଣ୍ଟିଦେବାକୁ ମୋତେ ଆଦେଶ ଦିଅନ୍ତେ—ମୁଁ ଆବାକାବା ହୋଇ ତାଙ୍କ ମୁହଁକୁ ଚାହିଁରହିଲି । ସେଦିନ ଶିକ୍ଷକ ମହୋଦୟ ମୋର ଆକାଶଠୁଁ ବଡ଼ ପିତା ଓ ପୃଥିବୀ ଅପେକ୍ଷା ବଡ଼ ମାତାଙ୍କ ପ୍ରତି ଅବିଚାର କରି—ଏବଂ ମୋର ମନୁଷ୍ୟ ଭଳି ଆକୃତିକୁ ଉପେକ୍ଷା କରି ମୋତେ ବି କହିଲେ "ଗଧ" । ମୁଁ ଗଧ ସେଦିନ ହସିଦେଲି ସିନା, ମାତ୍ର ତା' ଆରଦିନ ମାଷ୍ଟରଙ୍କୁ ପଚାରିଲି, "ମାଷ୍ଟ୍ରେ, ମୁଁ ଗଧ କେମିତି ହେଲି ? ମୋର ତ ବାପ ମା ମଣିଷ ଓ ମୁଁ ବି ଅବିକଳ ମଣିଷ ପରି ଖାଉଚି—ବୁଲୁଚି—କଥା ଗପୁଚି – ଆଉ ସବୁ କରୁଚି ।"

ମାଷ୍ଟ୍ରେ କହିଲେ—"ଆରେ ଗଧ – ଗଧ ମାନେ ଗଧ ନୁହେଁ—ଗଧ ଅର୍ଥ ନିବୁଦ୍ଧିଆ । ତୁ ଟ ୪୫ କୁ ୪ ଜଣଙ୍କ ମଧ୍ୟରେ ବାଣ୍ଟିଦେଇ ପାରିଲୁ ନାହିଁ ?" ମୁଁ କହିଲି—"କାହିଁକି ପାରି ନ ଥାନ୍ତି ? ଆପଣ ଟଙ୍କା ମୋ ହାତକୁ ଧରାଇ ଦେଇଥାନ୍ତେ—ଦେଖିଥାନ୍ତେ ମୁଁ ତିନିଜଣଙ୍କ ମଧ୍ୟରେ କଣ, ଆଠଜଣଙ୍କ ମଧ୍ୟରେ ବି ନିର୍ଲୋଭରେ ବାଣ୍ଟି ଦେଇଥାନ୍ତି । ମୋର ଟଙ୍କା କଣ ହୁଅନ୍ତା ? ଧର୍ମ ହଉଚି ଅସଲ—ମୁଁ କଣ ପାଠରେ ପଢ଼ିନାହିଁ ଯେ ବାଲ୍ୟକାଳରୁ ଧର୍ମ-ଧନ ସଞ୍ଚିବ –(ଯେଣୁ) ଏ ଜୀବନ ଅନିଶ୍ଚିତ" ! ମୋର ଏ ଉତ୍ତରରେ ସେଦିନ ସବୁ ମାଷ୍ଟ୍ରେ ଓ ପିଲା ହସିଉଠିଥିଲେ ।

ମାତ୍ର ମୁଁ ଉତ୍ତେଜିତ ହୋଇ ପଡ଼ିଥିଲି ସେଥର ଏବଂ ଆହୁରି ଟିକେ ବଡ଼ ହେଲାରୁ ମୁଁ ଠିକ୍ ବୁଝିଲି ଯେ – ମୋର ମାଷ୍ଟରଙ୍କୁ ସେଦିନର ଉତ୍ତର ନିହାତି ଠିକ୍ । ମାଷ୍ଟରଙ୍କ କଥା ଯଦି ଠିକ୍ ହୁଏ ଯେ ମୁଁ ଗଧ—ତେବେ ଗଧ ଅର୍ଥ ଜମା ନିବୁଦ୍ଧିଆ ନୁହଁ, ବରଂ ବେଶୀ ବୁଦ୍ଧିଆ, ଠିକ୍ ମୋ ଭଳି । ଯେହେତୁ "ଗଧ" ଅର୍ଥ ନିବୁଦ୍ଧିଆ ନୁହେଁ, ବେଶୀ ବୁଦ୍ଧିଆ । ସେହେତୁ ଗଧକୁ ନିବୁଦ୍ଧିଆ ଅର୍ଥରେ ଯେଉଁମାନେ ବ୍ୟବହାର କରନ୍ତି ସେମାନେ ବରଂ ଗଧ ଏବଂ ଗଧ ଜୀବଟା ଆଦୌ ନିବୁଦ୍ଧିଆ ନୁହେଁ ଏବଂ ଯେହେତୁ ଗଧ ଜୀବଟା ନିବୁଦ୍ଧିଆ ନୁହେଁ - ସେହେତୁ ଗଧକୁ ଯେଉଁମାନେ ନିବୁଦ୍ଧିଆ କହନ୍ତି ସେମାନେ ବରଂ ଗଧ ।

ମାତ୍ର ମୋର ଯୁକ୍ତିରେ ମୁଁ ଇ ଠିକିଗଲି । କିପରି ବୁଝିଲ ତ ? ତେଣୁ ମୁଁ ହଉଚି ପ୍ରକୃତ ଗଧ । ଦେଖନ୍ତୁ ଫେର ଠିକଲି । ଆହା—କି ଯୋଗ ଆଜି କପାଳେ ଅଛି ! ଆଚ୍ଛା ଗଧ ହାବୁଡ଼େ ପଡ଼ିଲି !!! ହଉ, ସେଥିରେ କଣ ଅଛି ? ସମୟରେ ସ୍ୱୟଂ ଭଗବାନ ବି ଗଧପାଦ ଧରିଥିଲେ । ମୁଁ ଏମିତି କୋଉ ଇଏ କି ?

କିନ୍ତୁ ଆଜି ମୋର ମତ ପରିବର୍ତ୍ତନ ହୋଇଛି । "ଗଧ" ଅର୍ଥ ପ୍ରକୃତରେ ନିବୁଦ୍ଧିଆ ଏବଂ ଗଧ ପ୍ରକୃତି ବି ନିପଟ ଓଲୁ ; ମୋ ମାଷ୍ଟରଙ୍କ କଥା ବି ବିଲକୁଲ୍ ଠିକ୍ ! ଏହିକଥା ମୁଁ ଆଜି ପର୍ଯ୍ୟନ୍ତ ନ ଜାଣି ଥିବାରୁ ମୁଁ ବି ଥିଲି ବଡ଼ ଗଧ । କିନ୍ତୁ କିପରି ଏଇ ଗଧ-ଲଞ୍ଜି-ଧରିରୁ ରାହା ପାଇ ମୋର ଜ୍ଞାନୋଦୟ ହେଲା ଜାଣନ୍ତି ?

ଗୋଟିଏ ବର୍ଷ ଲାଗିଲା ମୋତେ ଏଇ ଗଧମାନଙ୍କ ବିଷୟରେ ଗବେଷଣା କରି ମୋର ଗଧତ୍ୱ ଘୁଞ୍ଚାଇବାକୁ । ଶ୍ରାବଣ ମାସର ଅଳସ ଅପରାହ୍ନ । ମୋର ଗୃହର ଚତୁଃସୀମା ନବଦୁର୍ବାଦଳରେ ଶ୍ୟାମାୟିତ । ଚତୁର୍ଦ୍ଦିଗରେ କଅଁଳ ଛନଛନ ଗହଳ ଘାସର ଲୋଭନୀୟ ସବୁଜିମା । ଆକାଶରେ ନୀଳ ନବଘନର ଗମ୍ଭୀର ଆସ୍ତରଣ । ବୃକ୍ଷଲତା ନବ-କିଶଳୟରେ ହରିତାୟମାନ । ଧରଣୀରେ ସବୁଜଶ୍ରୀର ଏତେ ସମ୍ଭାର ! ଏତେ ଆକର୍ଷଣ ! ମଣିଷ ବି ଇଚ୍ଛା କରିବ ଏଇ ସବୁଜ ପତ୍ର ବା

ଘାସରୁ ଅନ୍ତତଃ ପେଟେ ଖାଇଦେବା ପାଇଁ । ସବୁଜପ୍ରାନ୍ତରରେ ଚାରି ପାଞ୍ଚୋଟି ଗୋରୁ, ତିନି ଚାରୋଟି ଛାଗଳ ଓ ସାତ ଆଠଟି ମେଷ ତୃଣ ଭକ୍ଷଣରେ ବ୍ୟସ୍ତ । ଆଉ କି ସ୍ୱାସ୍ଥ୍ୟ ହୋଇଚି ସେମାନଙ୍କର ! ମୋର ତ ମନେହେଲା—ଏ ଘାସ ସଙ୍ଗେ ଏଇ ଛେଳି ମେଣ୍ଢାଗୁଡ଼ାଙ୍କୁ ବି ଖାଇଯାନ୍ତି !! ମାତ୍ର ଏହି ସମୟରେ ପ୍ରବେଶ କଲେ ଶ୍ରୀଯୁକ୍ତ ଗର୍ଦ୍ଦଭଚନ୍ଦ୍ର ଗଧ । ଜୀର୍ଣ୍ଣ ଶୀର୍ଣ୍ଣ ଦେହ—ଅସ୍ଥିସାର ବପୁ—ଲୋମହୀନ ଅବୟବ । ଧୀର, ଅଳସ ଆଉ ମନ୍ଥର ତାଙ୍କର ଗତି । ଚାହାଣୀରେ ଏକ ବ୍ୟସ୍ତ ବିକଳ ଭାବ । ଏକୁଟିଆବାହାର ପରି କେବଳ ନବଦୁର୍ବାଦଳକୁ ଆଘ୍ରାଣ ମାତ୍ର କରି କରି ଆଗକୁ ଚାଲିଛନ୍ତି । ଆଶ୍ଚର୍ଯ୍ୟ ହେଲି ମୁଁ । ଦୟା ବି ଆସିଲା ମନରେ—ଆହା ବିଚାରା ଗଧ !! ଟିକିଏ ଆଗକୁ ଯାଇ ପଚାରିଲି—"ନମସ୍କାର ଗଧବାବୁ, ବଡ଼ ଦୁଃଖ ଲାଗୁଚି ଆପଣଙ୍କୁ ଏ ସମୟରେ ଦେଖି ।



ଚାରିଆଡ଼େ ଏତେ ଘାସ, ଏତେ କଅଁଳ ପତ୍ର ! ଆଉ ଆପଣଙ୍କୁ ଦେଖୁଚି ଏମିତି ନଅଙ୍କିଆ ବେଶରେ ? କଣ ଦେହ ଖରାପ ଅଛି ? ଯକ୍ଷ୍ମା ? ନା ତ —ଯକ୍ଷ୍ମା ତ ଆପଣମାନଙ୍କୁ ହେବାର କଥା ନୁହେଁ । ତେବେ କଣ ମ୍ୟାଲେରିଆ ? ଶୂଳବେମାରି ? ଗ୍ରହଣୀ ?"

ଗଧବାବୁ ଯୋଗୀଙ୍କ ଭଳି ଟିକେ ଶୁଖିଲା ହସ ହସି କହିଲେ—"ନା ମହାଶୟ, ରୋଗ ଫୋଗ ନୁହେଁ—ମନଟା ଖରାପ ଅଛି - ଆହେ ମନ ଖରାପ ହେଲେ ସବୁ ଖରାପ—ଚିନ୍ତା ଆଉ ଚିନ୍ତା ମଧ୍ୟରେ— ।" ଗଧବାବୁ ଆଉ ଯାହା କହୁଥାନ୍ତେ ମୁଁ ଜାଣିଥିଲି । ତେଣୁ କହିଲି—"ଆହା ସେ କଥା ସତ—ମାତ୍ର ଆପଣଙ୍କର ବିଶେଷତଃ ଏ ଋତୁରେ ଆଉ ଚିନ୍ତା ଗୋଟେ କଣ ? ବର୍ଷା ଯୋଗୁଁ ଚାରିଆଡ଼େ ପ୍ରଚୁର ଘାସ—ପ୍ରଚୁର ପତ୍ର—ଏ ସୌଭାଗ୍ୟରେ ଗଧମାନେ ଚିନ୍ତାକରିବା ଉଚିତ ନୁହେଁ—।"

ଗଧବାବୁ କାନ୍ଧ ପକାଇଲେ ଏବଂ ମୋର ପାଖକୁ ଆସି ବିକଟ ଚିତ୍କାର ଛାଡ଼ିଲେ ।—"ଶୁଣନ୍ତୁ ମହାଶୟ ! ଏ ଘାସ ବଡ଼ ନଷ୍ଟୁର—ବଡ଼ ଅସରନ୍ତି ! ମୁଁ କଣ ଚରୁ ନ ଥିଲି ଘାସ ? ମାଇଲଏ ରାସ୍ତା ପଛକୁ ମୁଁ ବି ଏଇ ବଦମାସ ଗାଈ ଘୋଡ଼ା ଛେଳିମାନଙ୍କ ପରି ଚରୁଥିଲି । ଚରୁ ଚରୁ ବହୁତ ଖାଇଲି—ପେଟେ— !! (ଗଧବାବୁ ପେଟକୁ ଫୁଲାଇଲେ) ଏବଂ ତଥାପି ଖାଇଲି—ଘାସ ଖାଇ ଖାଇ ଆଗକୁ ଚାଲିଲି । ପାଏ ବାଟ ଆସି ପଛକୁ ଚାହିଁଛି ତ—ଘାସଙ୍କ ସଂଖ୍ୟା କମିନାଇଁ । ଘାସଗୁଡ଼ାକ ଯେତିକି ଥିଲେ ଏବଂ ଯେଉଁକି ଥିଲେ ସେତିକ ଅଛନ୍ତି ଆଉ ସେଉଁକି ବି ଅଛନ୍ତି । ମୁଁ ଭାବିଲି—'ଯାଃ ଆଉ ଛେନା ଗୁଡ଼ ଖାଇବା !! ମୁଁ ବୋଧେ ଜମା କିଛି ଖାଇନାହିଁ—ବା ଖାଇ ପାରୁନାହିଁ । ଏ ବର୍ଷାଋତୁଟା ଗଧମାନଙ୍କୁ ସହିପାରୁନ'—ଏ ଋତୁଟାର ଦେଖିବେ ଗାଈ, ଘୋଡ଼ା, ଛେଳି, ମେଣ୍ଢା ଆଦିଙ୍କ ଉପରେ ଭାରି ସ୍ନେହ । ଦେଖୁନାହାନ୍ତି—ସେଗୁଡ଼ାକ ସେଠି ଚଲୁଛନ୍ତି—ଆଉ କେତେ ମୋଟା ହୋଇଛନ୍ତି !! ଆମ ଭାଗ୍ୟ ଖରାପ ମହାଶୟ—ଖାଲି ମୁଁ ନୁହେଁ ଯେତେ ଗଧ ଦେଖିବେ ସଭିଙ୍କ ଅବସ୍ଥା ଏଇଆ ହୋଇଚି !! ଏଇସବୁ ମାନସିକ ଅଶାନ୍ତି—ଆଉ କଣ ଶୁଣିବେ ? ଛାଡ଼ନ୍ତୁ ।" ଗଧବାବୁ ବିକଳାଙ୍କ ପରି ଶୁଖିଲା ହସ ହସି ଆଗକୁ ଚାଲିଲେ । ମୋତେ ହସ ଲାଗିଲା । ଦୟା ବି ଲାଗିଲା ! ଆହା ବିଚାରା ଗର୍ଦ୍ଦଭ !! କି ସୂକ୍ଷ୍ମ ବୁଦ୍ଧିରେ !! ଅପରିଆ ବାଡ଼ିରେ କଦଳୀ—ଅପରିଆ ନ ଖାଇ ହଉଚି ହଦାଣ !!

ଠିକ୍ ଏ ଘଟଣାର ପରବର୍ଷ । ଜ୍ୟେଷ୍ଠ ମାସ । ଘୋର ଗରମ । ପ୍ରଚଣ୍ଡ ଖରା—ନିଆଁ ପବନ—ଉତ୍ତପ୍ତ ବାଲି—ନଈ ପୋଖରୀ ସବୁ

ଶୁଣିଲି—ଘାସ ପତ୍ର ଦେଖାନାହିଁ—ଚାରିଆଡ଼େ ଧୂଷର—ଧୂ ଧୂ ତତଲା ମରୁଭୂମି ! ହଠାତ୍ ଥରେ ଦିନ ବାରଟାବେଳେ ଗଧବାବୁଙ୍କ ସଙ୍ଗେ ଦେଖା ହେଲା ! ଏଁ ? ଏ କଣ ସେଇ ଗଧବାବୁ ? ସେଇ ଶ୍ରୀଯୁକ୍ତ ଗର୍ଦ୍ଦଭଚନ୍ଦ୍ର ? ବିଶାଳ ବପୁ—ହାଣ୍ଡିଆ ପେଟ—ଲୋମଶ ଅବୟବ—ଢଳ ଢଳ ଚାଲି—ଗର୍ଦ୍ଦଭଚନ୍ଦ୍ରଙ୍କର ଗଜଗମନ । କି ସୁନ୍ଦର ଭାବେ ସଙ୍ଗୀତସାଗରରେ ଡୁବ ମାରି ଚାଲିଛନ୍ତି ! ଆଶ୍ଚର୍ଯ୍ୟ ହେଲି ! ଗଧବାବୁଙ୍କର ଏ ଦେହ କିପରି ଆସିଲା ? ଗଧବାବୁ କଣ କେଉଁ ମଠରେ ମହାନ୍ତ ହେଲେଣି କି ? ହସି ହସି ପଚାରିଲି—



"ନମସ୍କାର ଗଧବାବୁ ! ଆରେ ଆପଣଙ୍କୁ ଯେ ଚିହ୍ନି ହେଉନାହିଁ—କଥା କଣ ? କେଉଁ ଟନିକ୍ ଆପଣଙ୍କୁ ମୋଟା କଲା ? କେଉଁ ମୋଦକ ଭକ୍ଷଣରେ ଆପଣ ଏ ଅପୂର୍ବ ସ୍ୱାସ୍ଥ୍ୟ ଲାଭ କଲେ ? ଆଶ୍ଚର୍ଯ୍ୟ—ଆଶ୍ଚର୍ଯ୍ୟ—ଏ ଖରାଦିନେ—ପଡ଼ିଆରେ ଘାସ କେରାଏ ମଧ୍ୟ ଦେଖାନାହିଁ—ଗଛ-

ଗୁଡ଼ାକରେ ପଶର ଦେଖାନାହିଁ—ଅଥଚ ଆପଣ ଏ ଖରାଦିନେ ଏ ମରୁଭୂଇଁରେ ରହି ବି ଏତେ ମୋଟା ହୋଇଗଲେ ? କଥା କଣ ?"

ଗଧବାବୁ ଆପଣାର ବିଶାଳ ପେଟରେ ନଜର ଟିକେ ବୁଲାଇଆଣି—କି ସୁନ୍ଦର ବିକଟାଳ ହସ ହସି କହିଲେ—"ଏଥର ବୁଝିଲେ ତ ମହାଶୟ ? ଟନିକ୍, ମୋଦକ ଏସବୁ ଆମେ ଖାଉନାହିଁ । ଔଷଧ ବ୍ୟବହାର କରିବାର ମାରାତ୍ମକତା ଆମେ ଜାଣିଚୁ । ଅସଲ ହେଲା ମନ ଏବଂ ଖାଦ୍ୟ ପ୍ରତି ରୁଚି ବା ପ୍ରବଳ ଇଚ୍ଛା ଏବଂ ଖାଦ୍ୟର ପରିମାଣ ବୃଦ୍ଧି । ଏଥିପାଇଁ ଗ୍ରୀଷ୍ମ ଋତୁଟା ସବୁ ଋତୁରେ ସାର—ଅନ୍ତତଃ ଆମ ଗଧମାନଙ୍କ ମତରେ । ଆପଣ ଜାଣନ୍ତି—ଆପଣଙ୍କର ଏ ପଡ଼ିଆରେ ଘାସ ସବୁ କୁଆଡ଼େ ଗଲା ?"

ମୁଁ କହିଲି—"ହିଁ, ଏ ଆଉ ଏବେ କୋଉ କଠିନ ପ୍ରଶ୍ନ ? ଏଇ ପ୍ରଚଣ୍ଡ ଖରାରେ କଅଁଳ ଘାସ ଆଉ କେତେଦିନ ରହନ୍ତା ? ଖରାରେ ସବୁ ଶୁଖି ଯାଇଛି ।"

ଗଧବାବୁ ହସିଦେଲେ—"ଆଜ୍ଞେ ନାହିଁ ହେ—ଖରାରେ ଘାସସବୁ ଶୁଖିଗଲା ଯଦି—ବର୍ଷାରେ ଘାସସବୁ ସଢ଼ି ଯାଉ ନ ଥିଲା କାହିଁକି ? ଏ ଘାସସବୁ ମୁହିଁ ଶେଷ କରି ଆସିଲି ବର୍ତ୍ତମାନ । ଏଇ ମାସେ ହେଲା ମୁଁ ଦଶ ମାଇଲ ପର୍ଯ୍ୟନ୍ତ ଘାସ ଚରିସାରିଚି । ଗୋଟିଏ ଦୁବ ବି ବାକି ରଖିନି । ଗ୍ରୀଷ୍ମ ଋତୁକୁ ଧନ୍ୟବାଦ— ! ଏହି ସନ୍ତୋଷ ଓ ଖାଦ୍ୟ ଯୋଗୁଁ ମୋର ସ୍ୱାସ୍ଥ୍ୟ ଆଜି ଏତେ ଲୋଭନୀୟ ।"

ମୁଁ ହସିବି କି କାନ୍ଦିବି ଜାଣି ପାରିଲିନି—ତେବେ ଏତିକି କହିଲି—"ଠିକ୍ କଥା ଗଧବାବୁ ! ଗଧମାନେ ପ୍ରକୃତରେ ଗଧ ।" ଗଧବାବୁ ଆତ୍ମପ୍ରସାଦରେ ଗଧ ଭଳି ହସିଲେ ।



# ବୁଢ଼ାଟିଏ, ବୁଢ଼ୀଟିଏ

କୁଣ୍ଢେଇବେଣ୍ଢ ବୋଲି ଗାଁଟିଏ—ସେଠି ଥିଲେ ବୁଢ଼ୀଟିଏ ଆଉ ବୁଢ଼ାଟିଏ । ତାଙ୍କର ପୁଅ ଝିଅ କି ନାତି ନାତୁଣୀ କେହି ନ ଥାନ୍ତି । ବୁଢ଼ୀ କଣ କରେନା, ପଡ଼ୋଶୀମାନଙ୍କ ଘରକୁ ଯାଇ କାହାର ବାସନ ମାଜିଦିଏ ତ, କାହାର ଦାଣ୍ଡଦୁଆର ଘର ବାଡ଼ି ଓଳେଇ କାହାର ବା ପିଲାମାନଙ୍କୁ ତେଲ ହଳଦୀ ଲଗେଇ ଦେଇ କୋଉଦିନ ଖଣ୍ଡ ଗଣ୍ଡାଏ, ଡାଲି ଟିକିଏ, ତିଅଣ ହାପୁଡ଼ାଏ, କି ଶାଗ ମେଞ୍ଚାଏ ଧରି ଘରକୁ ଫେରେ । ବୁଢ଼ା ବୁଢ଼ୀ ଦି'ଜଣ ଭାଗ କରି ସେତକ ଖାଇ ଖୁସିରେ ରହନ୍ତି । ଦିନେ ଦିନେ ବୁଢ଼ା କ'ଣ କରେନା ବଣକୁ ଯାଇ ଗଛବୃକ୍ଷରୁ ଶୁଖିଲା ଡାଙ୍ଗ ଭାଙ୍ଗିଆଣି ବଡ଼ାକରି ହାଟରେ ବିକିଦିଏ । ଯାହା କିଛି ପଇସା ପାଏ ସେତକ ନେଇ ବଜାରରେ ଜଳଖିଆ ଦୋକାନକୁ ଯାଇ ବରା କି ଗୁଲୁଗୁଲା, ଲଡ଼ୁ କି ଜିଲାପି କିଣି ଖାଇଦିଏ । ବୁଢ଼ାଟା ଥିଲା ପ୍ରକୃତରେ ଟିକିଏ ଖାଇବା ଲାଳସା ଲୋକ । ବଜାରରେ ଗୁଡ଼ିଆ ଜିନିଷ ଟିକିଏ ତା' ପାଟିରେ ନ ବାଜିଲେ ତା' ଆତ୍ମା ଶାନ୍ତି ହୁଏ ନାହିଁ ।

ସେଦିନ ବୁଢ଼ୀ ବୁଢ଼ା ଉପରେ ଭାରି ଖପ୍ପା ହୋଇ କହିଲା— ହଇରେ କାଠଖିଆ ବୁଢ଼ା ! ସବୁତକ ପଇସା ତ ସେଣେ ଜଳଖିଆ ଖାଇ ଉଡ଼ାଇଦେଲୁ ! ଭବିଷ୍ୟତରେ ଭଲମନ୍ଦ ହେଲେ ଆମେ ଚଳିବା କେମିତି ? ଆଜି ସିନା ହାତଗୋଡ଼ ଚଳୁଛି, ଦି'ପାଇଟି କରି ପେଟ ପୋଷି ପାରୁଥାଇଁ —କାଲି ଯେତେବେଳେ ଆଉ ଗୋଡ଼ହାତ ନ ଚଳିବ କଣ କରିବା ? ପଇସା ଟିଏ ସଞ୍ଚିଥିଲେ ସିନା ସେତେବେଳେ କାମରେ ଲାଗିବ ?

ବୁଢ଼ା ଟିକିଏ ଲଜ୍ଜିତ ହୋଇଯାଇ ପାକୁଆ ପାଟିରେ ହସି ହସି କହିଲା—ଆଲୋ କଟରମଟର ବୁଢ଼ୀ ! ଶୁଣ ହ । ମତେ ଆଉ ଏତେ

ଝିଙ୍ଗାସ ବଚନ କହନା । ମୋ ପାଞ୍ଚିରେ ଟିକଏ ମିଠା ଜନଷ ମଝିରେ ମଝିରେ ବାଜୁଛି ବୋଲି ତୋ' ଧିଅ ସହୁନାହିଁ । କାଲିଠାରୁ ସବୁଚକ କାଠ ବକା ପଇସା ଆଣି ମୁଁ ତୋ' ପାଦତଳେ ଅଜାଡ଼ିଦେବ । ତୁ ତେଣିକ କଣ କରୁଚୁ କର ।

ବୁଢ଼ୀ କହିଲା—ମଲା ! ମୁଁ ସେ ପଇସା ଗିଳିଦେବ ନା ରୁେବେଇ ଦେବ ? ସବୁଦିନେ ସବୁ ଗାଛରେ ପାଞ୍ଚ ଦଶ ସଞ୍ଚି ସଞ୍ଚି ମାସକ ପରେ ଯେତେବେଳେ ମୁଠାଏ ପଇସା ହୋଇଯିବ, ମୁଁ କୁକୁଡ଼ା ବେପାର କରିବ । ବେପାର ବଣିଜ କଣ ଜାଣି ପାରୁଛୁରେ ବୁଢ଼ା ? ବେପାର କଲେ ଅଳପ ପଇସା ବେଶୀ ହୋଇଯାଏ ।

ବୁଢ଼ା ରାଜି ହେଲା । ପ୍ରତିଦିନ ସବୁଗାଛରେ ପାଞ୍ଚ ଦଶ ଗଳାଇ କେତେ ମାସ ପରେ ଦେଖାଗଲା ଟଙ୍କା ତିରିଶି ହୋଇଗଲାଣି । ସେଇଠୁ ବୁଢ଼ୀ କଣ କଲାନା, ତାଙ୍କ ବ୍ଲକ୍‌ର ସରକାରୀ କୁକୁଡ଼ା ଫାର୍ମକୁ ଯାଇ ତିରିଶିଟି କୁକୁଡ଼ା ଛୁଆ କିଣି ଆଣିଲା । ଘରେ ଆଣି ସେମାନଙ୍କୁ ଦାନାପାଣି ଦେଇ ବଢ଼ାଇଲା । ଦେଖୁ ଦେଖୁ କୁକୁଡ଼ା ଛୁଆଗୁଡ଼ାକ ଅଳ୍ପ କେଇଟି ମାସ ଭିତରେ ବେଶ୍ ବଡ଼ ବଡ଼ ହୋଇଗଲେ । ସେମାନଙ୍କ ଭିତରୁ କେତୋଟି ମୁରୁଗି ଅଣ୍ଡା ମଧ ଦେଲେ । ବୁଢ଼ୀ ସେତକ ହାଟକୁ ନେଇ ବେଶ୍ ଦି'ପଇସା ଅର୍ଜନ କଲା । କିନ୍ତୁ ଏଣେ କୁକୁଡ଼ାମାନଙ୍କୁ ଦେଖି ବୁଢ଼ା ପାଟିରୁ ଦିନରାତି ଖାଲି ଲାଳ ବୋହିଲା । ଭାବୁଥାଏ—ବୁଢ଼ୀଟା କୁଆଡ଼େ ଦିନ ରୁହିଟା ପାଇଁ ଘର ଛାଡ଼ ଯାଆନ୍ତା କ—ତା' ବାପ ଘରକୁ ହେଲେ ହପ୍ତାକ ପାଇଁ ଯାଆନ୍ତା କ—ମୁଁ ଏଥିରୁ ପାଞ୍ଚ ଛଅଟି କୁକୁଡ଼ା ପ୍ରତିଦିନ ଗୋଟାଏ ଲେଖାଁ ରାନ୍ଧି ସୁରୁଆ କରି ଖାଇଦିଅନ୍ତି । ଆଃ ! କୁକୁଡ଼ା ମାଂସ କି ନରମ ଆଉ ସୁଆଦିଆ ! କିନ୍ତୁ ସେ ଖେଣ୍ଟି ବୁଢ଼ୀ କ'ଣ କୁଆଡ଼େ ହେଲେ ଯାଉଛି ? ସବୁବେଳେ ପରା ସେ କୁକୁଡ଼ାଙ୍କୁ ବାଡ଼ଧରି ଜଗି ବସିଛି । କ'ଣ ଏବେ କରିବା ?

ଏମିତି ଭାବି ଭାବି ବୁଢ଼ା ଗୋଟାଏ ଉପାୟ ପାଞ୍ଚିଲା । ଦିନେ ବୁଢ଼ୀକି ଡାକି ଖୁବ୍ ଗୋଟାଏ ପେଖନା କାଢ଼ି ମିଛିରେ କାନ୍ଦି କାନ୍ଦି ହୋଇ କହିଲା—

ଆରେ ହେ ବୁଢ଼ୀ ! ଶୁଣ ! ଏଣିକ ଆଇଲୁ ଏଠିକ ! ଆ’ ଶୁଣିଯା ! ଓହୋ ! କାହିଁକି ଆଉ ସେ ବୃଥା ବେପାରରେ ମାତିଛୁ— କୋଉ ଆଶାରେ ? ମୁଁ ତ ଆଜଠଉଁ ପନ୍ଦର ଦିନରେ ମରିବି—ତୋ’ ହାତରୁ କାଚ ଖଣ୍ଡ ଓହ୍ଲା ହେବ—ତୋ ମଥାରୁ ସିନ୍ଦୂର ପୋଛି ହେବ। ତୁ ଆଉ ଏ କୁକୁଡ଼ାଙ୍କୁ ନେଇ ମାତିଛୁ କାହିଁକି ?

ଏକଥା ଶୁଣି ବୁଢ଼ୀର ହଲକ ଶୁଖିଗଲା । ତା’ ମୁଣ୍ଡ ବୁଲାଇ-ଦେଲା । ତା’ ଦେହ ହାତ ଥରିଲା । ସେ ବୁଢ଼ା ପାଖକୁ ଲାଗିଆସି କହିଲା —ହେ ମୋ ଧନଜୀବନ ! ଏ କି ଅଲକ୍ଷଣା କଥା ତୁମ ତୁଣ୍ଡରୁ ବାହାରୁଛି କହିଲ ଦେଖି ! କାହାଠୁଁ କଣ ଶୁଣିଲ, କହିବଟି ଚଞ୍ଚଳ । କୋଉ ଜୋତିଷକୁ ଜାତକ ଦେଖେଇଥିଲ କି ?

ବୁଢ଼ା କହିଲା—ଆରେ ନାଇଁ, ଜଉତିଷ ! କଥା ଯାଇ କୋଉଠି ମାଇଲଣି ! ଶୁଣ୍ ! ସେଦିନ ବଣକୁ ଯାଇ କାଠ ହାଣୁଛି—ପାହାଡ଼ ପାଖରେ ଯୋଉ ଦେବୀ ଖୋଲ ଗୁମ୍ଫା ଅଛି—ତା’ର ଭିତରୁ ହଠାତ୍ ଗୋଟିଏ ଭୟଙ୍କର ଶୂନ୍ୟରଉ ଶୁଭିଲା—“ଆରେ ହେ ଅଲପାଇସା ବୁଢ଼ା ! ମୋ ବଣରୁ ଏତେ କାଠ ନେଇ ବିକି ପଇସା କମେଇଲୁ । ସେ



ପଇସା ନେଇ ତୋ ବୁଢ଼ୀ କୁକୁଡ଼ା ବେପାର କଲା । ମୁଁ ଏ ବଣର ବନଦୁର୍ଗା ଠାକୁରାଣୀ ବୋଲି ତତେ ଜଣା ଅଛିଟି ? ତୁ ମତେ କଛି

ଖାଇବାକୁ ଦେଇନାହଁ ! କୁକୁଡ଼ା ମାଉଁସ ମୋର ଖୁବ ପ୍ରିୟ । ଯା' ତୋ ବୁଢ଼ୀକୁ କହିବୁ—କାଲିଠାରୁ ସାତଦିନ ଯାଏ ପ୍ରତିଦିନ ଗୋଟାଏ ଲେଖାଁ କୁକୁଡ଼ା ଭଲକରି କାଟିକୁଟି ତେଲ ମସଲା ଦେଇ ରାନ୍ଧିବାନ୍ଧି ତରକାରି କରି ଗୋଟିଏ ମାଟି ପଲମରେ ଆଣି ଏ ଗୁମ୍ଫା ଭିତରେ ଥୋଇଦେଇ-ଯିବ । ମୁଁ ଖାଇବି । ସାବଧାନ ! ସାତଦିନ ଯାଏ ସାତୋଟି କୁକୁଡ଼ା ମୋ ପାଖେ ଆସି ତୋ ବୁଢ଼ୀ ଭୋଗ ଲଗେଇ ଯିବ । ଆଉ ଦେଖ୍ ତୋ ବୁଢ଼ୀ ଯେମିତି କଦାପି ଏ ଗୁମ୍ଫା ଭିତରେ ନ ପଶେ । ପଶିଲେ—ତୋ ବୁଢ଼ୀକି କନ୍ଧା ଖାଇଯିବ, ଜାଣିଥା । ଆଉ ଶୁଣ୍—ଯଦି କାଲିଠାରୁ ତୋ' ବୁଢ଼ୀ ଏ କଥାକୁ ଅମାନ୍ୟ କରେ ତା'ହେଲେ ମୁଁ ତୋତେ ପନ୍ଦର ଦିନ ଭିତରେ ଖାଇବି—ତୋ ବୁଢ଼ୀ ବିଧବା ହେବ । ଫେରେ ତୋ ବୁଢ଼ୀର କୁକୁଡ଼ାମାନଙ୍କୁ ବ ହଇଜା ହୋଇ ଲାଗିବ । ସେଗୁଡ଼ା ଧଳା ଧଳା ଛେରିବେ—ମରିବେ । ସବୁ ତତେ କହିଦେଲି । ଏଣିକି ତୋ ଇଚ୍ଛା, ତୁ ଯାହା କର ।

ବୁଢ଼ା କଥା ଶୁଣି ବୁଢ଼ୀ ହାଉଳୀ ମାଉଳୀ ଖାଇ ଉଠିଲା । କହିଲା—ଆରେ ଯା'ରେ କୁକୁଡ଼ା ! ମୋ ବୁଢା ଆଗ ନା କୁକୁଡ଼ା ଆଗ ରେ ? ହେ ମା ବନଦୁର୍ଗା ଠାକୁରାଣୀ ! ମୋ ବୁଢ଼ା ଦେହରେ ହାତ ଦେବୁ ନାହିଁ ଲୋ ମାଆ ! ତୋ' କହିବା ମତେ ମୁଁ ସବୁଦିନେ ତୋ' ପାଖରେ ଗୋଟିଏ ଲେଖାଁ କୁକୁଡ଼ା ତରକାରି କରି ଥୋଇ ଦେଇ ଆସିବି କାଲିଠାରୁ ସାତଦିନ ପରିଯନ୍ତେ । ମାଆଲୋ ! ମୋ ମୁଣ୍ଡ ପଛେ ଖାଅ ..! ମୋ ଏକୋଇର ବୁଢ଼ା ବରିକେଶନ—ତା'କୁ ଯେମିତି ଘଣ୍ଟ ଭୋଗ୍ରେଇ ରଖ ।

ସତକୁ ସତ ତା' ପରଦିନ ଠାରୁ ବୁଢ଼ୀ କଣ କଲାନା, କୁକୁଡ଼ାଟିଏ ମାରି ଭଲକରି ତେଲ ମସଲା ଦେଇ ରାନ୍ଧି, ପଲମରେ ରଖି ନେଇ ପାହାଡ଼ର ଗୁମ୍ଫା ଦୁଆର ମୁହଁରେ ଥୋଇ ଆଖି ବୁଜି ମୁଣ୍ଡିଆଟିଏ ମାରେ, ଆଉ କହେ—"ହେ ମା' ବନଦୁର୍ଗା ଠାକୁରାଣୀ ! କୁକୁଡ଼ା ତରକାରି ମନଭରି ଖା'—ମୋ ବୁଢ଼ାକୁ ଅଜାମର କରି ରଖିଥା ଲୋ ମାଆ !" ତା' ପରେ ବୁଢ଼ୀ ଏକମୁହାଁ ହୋଇ ଘରକୁ ଫେରିଆସେ ।

ଏଣେ ବୂଢ଼ା କଣ କରେନା, ବୂଢ଼ୀ ଯେମିତ ଗାଁକୁ ଫେରଯାଏ, ସେମିତ ଗଛରୁ ଓହ୍ଲାଇ ଆସି ସେ ଗୁମ୍ଫା ଭିତରେ ପଶି କୁକୁଡ଼ା ତରକାରୀତକ ମନ ଖୁସିରେ ଖାଇ ଝରଣାରେ ମୁହଁ ହାତ ଧୋଇ, ପାଣି ପିଇ, ଏଉଡ଼ ମାର ଘରକୁ ଫେର ଗୃରକାତ ଲମ୍ବାଇ ଶୋଇପଡ଼େ । ବୂଢ଼ୀ ପଗ୍ଚରେ – ଆରେ ବୂଢ଼ା ! କାଠ ହାଣି ହାଣି ଥକ ପଡ଼ିଛୁ— ଉଠ୍ ଗଣ୍ଡିଏ ଖା’ । ବୁଢ଼ା କହେ – ନାଇଁଲେ ବୂଢ଼ୀ ! ମତେ ଆଉ ବଳାନା ! ସାତଦିନ ଯାଏ ମୁଁ ବନଦୁର୍ଗାଙ୍କ ପାଖେ ମାନସିକ କରଛି— ଦିନରେ ବକତେ ଖାଇବ ରାତ୍ରିକ ନିର୍ଘାତେ ହବିଷ ପାଳିବ ।

ଏମିତ ଏମିତ ସାତଦିନ ଗଲା । ସାତୋଟି କୁକୁଡ଼ା ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ତରକାରୀ ଭୋଗ ଲଗେଇ ସାରିଲା ପରେ ଶେଷଦିନ ବୂଢ଼ୀ ତରକାରୀ ପଲମ ଗୁମ୍ଫା ଭିତରେ ଥୋଇ ଘରକୁ ଫେର ଆସୁଛି—ଅଧା ବାଟରେ ତା’ ମନରେ ଭାବିଲା—ଠାକୁରାଣୀଙ୍କୁ ସାତଦିନ ଯାଏ ଭୋଗ ଦେଲି—ଟିକିଏ ଦର୍ଶନ କଲି ନାହିଁ ! ଯାଉଛି ଆଜି ତାଙ୍କୁ ଦର୍ଶନ କର ମୂଣ୍ଡିଆ ମାର ଆସିବ । ଏତେକ ଭାବ ପୁଣି ଗୁମ୍ଫା ଆଡ଼କୁ ଲେଉଟି ଆସିଲା । ଗୁମ୍ଫା ଭିତରକୁ ହାତଯୋଡ଼ ପଶିଗଲା ବେଳକୁ ଯାହା ଦେଖିଲା —ସେଥିରେ ତା’ ମୁଣ୍ଡକୁ ରାଗରେ ପିତ୍ତ ଉଠିଗଲା । ସେ ଅଣ୍ଟାରେ ହାତ ଦେଇ କହିଲା—ହଇରେ କାଠଗିଆ ଜାଳିଆ ପେଟ୍ଟୁ ବୂଢ଼ା ? ତୁ ମତେ ଏମିତ ମିଛରେ ଭୁଲେଇ ମୋର ସାତ୍ତୁଟା ଅଣ୍ଡାଦିଆ କୁକୁଡ଼ା ତୋ’ ପେଟରେ ପକାଇ ଦେଲୁ ! ହଉ ! ଆଉ ତୋ’ ସଙ୍ଗେ ମୋର କଛି କଥା ନାହିଁ କ ସମ୍ପର୍କ ନାହିଁ । ମୁଁ ଗୃଲିଲ ମୋ ବାପ ଘରକୁ । ମୋର ଗୃର ଗୃରଟା ଭାଇ ଅଛନ୍ତ ବା ! ଏକୁ ଆରେକ ବଳଆର । ମୋ ପେଟ ଗୃଖଣ୍ଡିକ ଅପୋଷା ରହିବ ନାହିଁ । ହେଲେ ତୁ ଏକୁଟିଆ ମରୁଥା । ମୁଁ ଗୃଲିଲ ।

ରାଗରେ ଗରଗର ହୋଇ ବୂଢ଼ୀ ଘରକୁ ଫେର ଆସିଲା । ଗୋଟିଏ ବଡ଼ ବେତପେଟି ଭିତରେ ସବୁ ଜନିଷପତ୍ର ପୂରେଇ ଦଉଡ଼ିରେ ବାନ୍ଧିଦେଲା । ତା’ପରେ ବାଡ଼ ପୋଖରୀକୁ ଧୂଆଧୋଇ ହେବାକୁ ଗଲା । ଇତ ମଧ୍ୟରେ ବୂଢ଼ା କଣ କରଛନା—ଘରକୁ ଫେର ଦେଖେ ତ, ବୂଢ଼ୀ

ଏମିତ ଏମିତ କାଣ୍ଡ କର ବାପ ଘରକୁ ଯିବାକୁ ମସୁଧା କରୁଛୁ ! ବୁଢ଼ା ସେଇଠୁ ପେଡ଼ିଟାକୁ ଫିଟାଇ ସେଥିରୁ ଜନ୍ମଷପତର କାଢ଼ି ନେଇ କୁଆଡ଼େ ଲୁଚାଇ ଦେଲା । ସାହିର ଗୋଟେ ଟୋକା ପିଲାକୁ ଡାକି କହିଲା – ଆରେ ପିଲା ! ତୋତେ ଏ କୋଡ଼ିଏଟା ପଇସା ଦଉଛୁ – ନେ—ଲଡ଼ୁ ଖାଇବୁ । ମୁଁ ଏ ପେଡ଼ି ଭିତରେ ପଶୁଛୁ । ତୁ ଏ ପେଡ଼ିଟାର ମୁହଁଟା ବନ୍ଦ କରି-ଦେଇ ଏମିତ ଦଉଡ଼ି ବାନ୍ଧି ଦେବୁ । ଦେଖ୍ ଏ କଥା କାହା ଆଗେ କହିବୁ ନାହିଁ ।

ସତକୁ ସତ ବୁଢ଼ା ପେଡ଼ି ଭିତରେ ପଶିଲା । ପିଲାଟି ମଧ୍ୟ ପେଡ଼ିର ମୁହଁ ବନ୍ଦ କରି ଦଉଡ଼ି ବାନ୍ଧି ଦେଇ ପଇସାତକ ଧରି କୁଆଡ଼େ ଚମ୍ପଟ ହୁ' କଲା ।

ଏଣେ ବୁଢ଼ୀ ଧୁଆଧୋଇ ହୋଇ ଘରକୁ ଫେରିଲା । ପଖାଳ ଗଣ୍ଡିଏ ଖାଇ ବହୁ କଷ୍ଟରେ ପେଡ଼ିଟିକୁ ମୁଣ୍ଡେଇ ଚାଲିଲା ତା' ବାପଘର ଉଦ୍ଦେଶ୍ୟରେ । ବୁଢ଼ୀର ବାପଘର ସେଠୁ ପ୍ରାୟ କୋଡ଼ିଏ କିଲୋମିଟର ଦୂର । ବଜାରରେ ପହଞ୍ଚି ଗୋଟିଏ ବସ୍‌ରେ ପେଡ଼ିଟି ଥୋଇ ସେ ବସିଲା । ବସ୍‌ଟି ଚାଲିଲା ।

ଠିକ୍ ଘଣ୍ଟା ଘଡ଼ିକ ପରିକା ବୁଢ଼ୀ ଯାଇ ପହଞ୍ଚିଲା ତା' ବାପ-ଘରେ । ଚାରି ଭାଇଯାକ ବୁଢ଼ୀକି ଦେଖି ଭାରି ଖୁସି ହେଲେ । ବୁଢ଼ୀ ତା' ଭାଇମାନଙ୍କୁ ସବୁ ହାଲ୍‌ହକିକତମାନ ଜଣାଇ କହିଲା—ମୁଁ ଆଉ ସେଇ ଜାଲିଆ ପେଟୁ ବୁଢ଼ା ଘରକୁ ଯିବିନାହିଁ । ମଲାଯାଏ ତୁମରିମାନଙ୍କ ପାଖରେ ରହିବି । ଭାଇମାନେ ଏକା ସ୍ୱରରେ କହିଲେ—ନାଣୀ ଲୋ, କିଛି ଚିନ୍ତା କରନା । ଆମରି ପାଖେ ଖୁସିରେ ରହ । ସେ ଟୋଠା ବୁଢ଼ା ତେଣେ ମରୁ କି ବଞ୍ଚୁ ।

ସେଇଠୁ ବୁଢ଼ୀ ଲୁଗା ପାଲଟିବ ବୋଲି ତା' ପେଡ଼ିଟିକୁ ଫିଟାଇଲା । କିନ୍ତୁ ଏ କଣ ? ଏ କିଏରେ ? ବୁଢ଼ୀ ଆଖି ତରଟି ପଞ୍ଚମ ସ୍ୱରରେ କହିଲା—କିରେ ? କାଠଖିଆ ପେଟୁ ଜାଲିଆ ବୁଢ଼ା ! ତୁ କଣ

ଘୁଆ ଭିତରେ ? ମତେ ଯାଙ୍କା ମରଣ ହେଉ ନାହିଁ ଲୋ ! କାଅଣ ମୁଁ ଆଉ ଚଟେ କାନ୍ଦୁବଠି ?



ଏତିକି କହି ବୁଢ଼ୀ ହସିଦେଲା । ବୁଢ଼ୀର ହସ ଦେଖି ବୁଢ଼ା ମଧ୍ୟ ସେହି ପେଡ଼ି ଭିତରେ ବସି 'ତା' ପାକୁଆ ପାଟିରେ ହସି ହସି ଗୀତଟିଏ ଗାଇଲା—

ଆଲୋ ବୁଢ଼ୀ ତୋର ଏତେ କପଟ
ମତେ ଛାଡ଼ିଦେଇ କଲୁ ଚମ୍ପଟ ?
କୁକୁଡ଼ା ପାଇଁକ ଛାଡ଼ି ବୁଢ଼ାକୁ,
ଦଉଡ଼ି ଆସିଲୁ ବାପ ଘରକୁ ?

ବୃଢ଼ୀ ବିଚାରୀ ଆଉ କଣ କହିବ ? ପେଟ ଭିତରୁ ବୁଢ଼ାକୁ କାଢ଼ି ଘର ଭିତରକୁ ନେଲା । ସୁର ଶଳାଯାକ ଭିଟୋଇ ବୂଢ଼ାକୁ ଧରି ଖୁବ୍ ରଙ୍ଗ ରହସ୍ୟ କଲେ । ରାତିଯାକ ଖାନାପିନା ମଉଜ ମଜଲିସ୍‌ରେ କଟିଗଲା । ସକାଳ ହେଲାରୁ ବୂଢ଼ାବୁଢ଼ୀ ଦିହେଁଯାକ ପୁଣି ଆପଣା ଘରକୁ ଫେରି ଆଇଲେ ।

